# ସୂଚୀ





# ଏଇ ଧରଣୀର ବକ୍ଷ ପରେ

ବମ୍ବେ, କଲିକତା, ମାନ୍ଦ୍ରାଜ—ତିନି ସ୍ଥାନରେ ବ୍ରିଟିଶ୍ ପତାକା ସଗର୍ବରେ ଉଡ଼ୁଛି । ଇଂରେଜ ବଣିକମାନେ ଭାରତୀୟ ସ୍ୱାଧୀନତାକୁ ଧକ୍କା ଦେଇ, କଲିକତାଠାରେ ଗାଦି ମାଡ଼ି ବସିଛନ୍ତି । ସାରା ବଙ୍ଗଦେଶରେ ଗୋରା ଶାସନ ସଦର୍ପରେ ଗର୍ଜନ କରି ଉଠୁଛି । ବକ୍‌ସାର ଯୁଦ୍ଧର ଅବସାନଠାରୁ ଅଯୋଧ୍ୟାର ନବାବ୍ ଅଥର୍ବ ହୋଇ ପଡ଼ିଛନ୍ତି । ଉତ୍ତର ଭାରତରେ ସ୍ୱାଧୀନତାକୁ ଖର୍ବ କରି ପଦେ ପଦେ ପରାଧୀନତାର ଲୌହ-ଶୃଙ୍ଖଳ—ପଦେ ପଦେ ବ୍ରିଟିଶ୍ ଆଧିପତ୍ୟ ।

ମାନ୍ଦ୍ରାଜର ମୁଣ୍ଡ ଉପରେ ସେହି ପ୍ରେତର ତାଣ୍ଡବ ଲୀଳା । ମାନ୍ଦ୍ରାଜର ଗୋରା ସରକାର ବ୍ୟତିବ୍ୟସ୍ତ, ଦାକ୍ଷିଣାତ୍ୟରେ କଲିକତା କାଣ୍ଡର ପୁନରାଭିନୟ—ଦାକ୍ଷିଣାତ୍ୟରେ ଭ୍ରାତୃବିବାଦ ସୃଷ୍ଟିକରି ସାରା ଦକ୍ଷିଣ ଭାରତରେ ବ୍ରିଟିଶ୍ ଆଧିପତ୍ୟର ପ୍ରତିଷ୍ଠା ।

ସେତେବେଳେ ଦକ୍ଷିଣ ଭାରତରେ ନିଜାମ୍ ଓ ମରହଟ୍ଟା—ପ୍ରଧାନ ଯୋଡ଼ିଏ ଦେଶୀୟ ଶକ୍ତି । ହାଇଦ୍ରାବାଦ୍‌ର ଅଧିପତି ନିଜାମ୍ ଦୁର୍ବଳ । ହାଇଦ୍ରାବାଦର ବୈଦେଶିକ ବିଭାଗ ଦୁର୍ବଳତାର ହୃତ୍‌କମ୍ପନରେ ବିବ୍ରତ ।

ପୁଣି ମରହଟ୍ଟା ଶକ୍ତି ପୁନାର ପେଶବାଙ୍କୁ କେନ୍ଦ୍ର କରି ସମସ୍ତ ପଞ୍ଚ ମରହଟ୍ଟା ରାଜ୍ୟ ଘୂରି ବୁଲୁଛି । ପଶ୍ଚିମ ଉପକୂଳରୁ ପୂର୍ବ ଉପକୂଳ ପର୍ଯ୍ୟନ୍ତ, ଗଙ୍ଗାନଦୀ ତୀରରୁ କୃଷ୍ଣାନଦୀ ପର୍ଯ୍ୟନ୍ତ ମରହଟ୍ଟା ସାମ୍ରାଜ୍ୟର ବିସ୍ତୃତି । ଇଚ୍ଛା କରିଥିଲେ ଅନେକ କିଛି କରିପାରି-ଥାନ୍ତେ । ଭାରତରେ ବ୍ରିଟିଶ୍ ଶାସନକୁ ଥରହର କରିଦେଇ ପାରି-ଥାନ୍ତେ । କିନ୍ତୁ କାହିଁ ? ଅନ୍ତର୍ବିବାଦ ଓ ଭ୍ରାତୃ କଳହରେ ସାରା ମହାରାଷ୍ଟ୍ର ଦୁଲ୍‌ଦୁଲ୍ କମ୍ପୁଛି । ରଘୁନାଥ ରାଓ ଓ ନାନାଫର୍ଣ୍ଣବିସ୍‌ଙ୍କ ମଧ୍ୟରେ ଟଣାଓଟରା ଲାଗିଛି । କଲିକତାରେ ମିର୍ଜାଫରଙ୍କ ପରି, କର୍ଣ୍ଣାଟରେ ମହମ୍ମଦ ଅଲ୍ଲିଙ୍କ ପରି, ପୁନାଠାରେ ରାଘୋବାଙ୍କୁ ହାତ-ବାରିସୀ କରି ଏକଛତ୍ର ଶାସନ ଚଳାଇବାକୁ ମାନ୍ଦ୍ରାଜ ସରକାର ଚକ୍ରାନ୍ତ ଚଳାଇଛନ୍ତି । ଯେଉଁ ଆଡ଼କୁ ଚାହିଁବ ସେଠାରେ ଦେଖିବ ଭାରତର ଜାତୀୟତା ପଦେ ପଦେ ପିଷ୍ଟ—ପଦେ ପଦେ ଦଳିତ । ବ୍ରିଟିଶ୍ ଶକ୍ତିକୁ ଧକ୍‌କା ଦେଇ ଭାରତୀୟ ଜାତୀୟତାର ଟେକ ରଖିବା ପାଇଁ କେହି କେଉଁଠାରେ ଦିଶୁନାହାନ୍ତି । ଚତୁର୍ଦ୍ଦିଗ ଶୂନ୍ୟ —ଅନ୍ଧକାରମୟ—ହାହାକାରପୂର୍ଣ୍ଣ—ଗୁରୁ ଲାଞ୍ଛନାରେ ଲାଞ୍ଛିତ ।

ଠିକ୍ ଏତିକବେଳେ ଭାରତଭୂମିରେ ହାଇଦର୍ ଅଲ୍ଲିଙ୍କର ଆବିର୍ଭାବ । ଭାରତବକ୍ଷରେ ଆଶା, ଆଶ୍ୱାସନା ଏବଂ ଉତ୍ସାହର ଲହରୀ ଖେଳାଇ ଦେଇ ସାମାନ୍ୟ ସୈନିକର ପୁତ୍ର ହାଇଦର ସ୍ୱୀୟ ସାଧନା ବଳରେ ଉଚ୍ଚକୁ ଉଠି ମହୀଶୂର ରାଜ୍ୟର ସର୍ବେ-ସର୍ବା ହୋଇ ସମସ୍ତ ଦକ୍ଷିଣ ଭାରତରେ ବ୍ରିଟିଶ୍ ମାନ ସମ୍ମାନକୁ ପଦାଘାତ କରିଥିଲେ । ବୀର ହାଇଦରଙ୍କ ବଜ୍ରନାଦରେ ମାନ୍ଦ୍ରାଜ ସରକାରଙ୍କ ଶାସନ ଭିତ୍ତି ଦୋହଲି ଯାଇଥିଲା ।

୧୭୨୧ ଖ୍ରୀ:ଅ: ରେ କ୍ୟୁରେସ୍ ବଂଶରେ ହାଇଦର ଅଲ୍ଲି ପିତାଙ୍କ ଜାଗିର ବୁଡ଼୍‌କୋଟଠାରେ ଭୂମିଷ୍ଠ ହୋଇଥିଲେ । ତାଙ୍କ ପିତାଙ୍କ ନାମ ଫତେ ମହମ୍ମଦ । ପ୍ରପିତାମହ ଓ୍ୟାଲି ମହମ୍ମଦ ଦିଲ୍ଲୀ ତ୍ୟାଗ କରି ନିଜାମ ରାଜ୍ୟସ୍ଥ କୁଲବର୍ଗାଠାରେ ବାସ କରୁଥିଲେ । ପିତାମହ ମହମ୍ମଦ ଅଲ୍ଲି, ସିରାଠାକୁ ଆସି କୃଷି ଓ ଉଦ୍ୟାନ ଗଠନ କରିବାରେ ଆପଣାକୁ ନିୟୋଜିତ କରି ରଖିଲେ । ମହମ୍ମଦ ଅଲ୍ଲି ଅନେକ ସମୟରେ ନିଜ ପୁଅମାନଙ୍କୁ ଉପଦେଶ ଦେଇ କହୁଥିଲେ, "ଆମ ପୂର୍ବପୁରୁଷମାନେ ବଡ଼ ପରମାର୍ଥୀ ଥିଲେ ଏବଂ ସେ ଦୃଷ୍ଟିରୁ ସେମାନେ ସାଧାରଣ ସ୍ତରରୁ ବହୁତ ଉଚ୍ଚରେ ଥିଲେ ବି ସଂସାର ବନ୍ଧନରୁ ଆପଣାକୁ ଛିନ୍ନକରି ରଖିବାକୁ କେବେହେଲେ ଚେଷ୍ଟା କରି ନ ଥିଲେ ।"

ମହମ୍ମଦ ଅଲ୍ଲିଙ୍କ ଚତୁର୍ଥ ପୁତ୍ର ଫତେ ମହମ୍ମଦ ଆର୍କଟ ଓ ମହୀଶୂରଠାରେ ପ୍ରଥମେ ବିଭିନ୍ନ ସେନାପତିଙ୍କ ଅଧୀନରେ ସାଧାରଣ ସୈନିକରୂପେ କାର୍ଯ୍ୟ କରୁଥିଲେ । ଅବଶେଷରେ ସେ ସିରାର ନବାବ ଦର୍ଘାକୁଲି ଖାଁଙ୍କ ଅଧୀନରେ ସେନାପତିରୂପେ କାର୍ଯ୍ୟ କରି ନାମ ଅର୍ଜନ କରିପାରିଥିଲେ । ସେଠାରେ ସେ ଦୁଇ-ଶତ ପଦାତିକ ଓ ଏକଶତ ଅଶ୍ୱାରୋହୀଙ୍କ ଉପରେ ପ୍ରଭୁତ୍ୱଲାଭ କରିପାରିଥିଲେ । ଫତେ ମହମ୍ମଦ ନବାବ ଦର୍ଘାକୁଲି ଖାଁଙ୍କ ଅନ୍ତେ ତାଙ୍କ ପୁତ୍ର ଅବଦୁଲ ରସୁଲଙ୍କ ଅଧୀନରେ କାର୍ଯ୍ୟ କଲେ । ଏହି ସମୟରେ ସିରାର ସୁବାଦାର ତାହିର ଖାଁ ଏବଂ ଅବ୍‌ଦୁଲ ରସୁଲଙ୍କ ମଧ୍ୟରେ ଯୁଦ୍ଧ ହୋଇଥିଲା । ୧୭୨୮ ଖ୍ରୀ: ଅ: ରେ ସେହି ଯୁଦ୍ଧରେ ଫତେ ମହମ୍ମଦ ନିହତ ହୋଇଥିଲେ ।

ଫତେ ମହମ୍ମଦଙ୍କ ପରିବାର ସେତେବେଳେ ଦୋଦ୍‌ବାଲ୍ଲପୁର-ଠାରେ ବାସକରୁଥିଲେ । ଦର୍ଘାକୁଲିଙ୍କର ଜନୈକ ପୁତ୍ର ଆବାସକୁଲି ହାଇଦର ଓ ତାଙ୍କ ବଡ଼ଭାଇ ସାହାବ୍‌ଜାଙ୍କୁ ମାଡ଼ମାରି ସେମାନଙ୍କ ପରିବାରଠାରୁ ଅର୍ଥ ଶୋଷଣ କରିବାପାଇଁ ଦୁହିଁଙ୍କି ବନ୍ଦୀ କରି ରଖିଲେ । ତେଣୁ ହାଇଦର ଅଲ୍ଲିଙ୍କ ବିଧବା ମାତା ହାଇଦର ସାହେବଙ୍କ ନିକଟକୁ ଗୋଟିଏ ଆପତ୍ତି ଦରଖାସ୍ତ ପଠାଇଲେ । ଏହି ହାଇଦର ସାହେବ ହେଉଛନ୍ତି ସ୍ୱର୍ଗୀୟ ଫତେ ମହମ୍ମଦଙ୍କର ଜଣେ ଭାଇଙ୍କର ପୁଅ । ସେ ମହୀଶୂର ରାଜାଙ୍କ ଅଧୀନରେ ଚାକିରି କରିଥିଲେ । ତାଙ୍କ ଅଧୀନରେ ଏକଶତ ଅଶ୍ୱାରୋହୀ ଏବଂ ଦୁଇଶତ ପଦାତିକ ରହିଥିଲେ । ସେ ଏ ସମ୍ବାଦ ପାଇ ମହୀଶୂର ରାଜାଙ୍କ ସାହାଯ୍ୟ ଲୋଡ଼ିଲେ । ମହୀଶୂର ରାଜାଙ୍କ ଆଦେଶପତ୍ର ପାଇ ସିରାର ନବାବ, ହାଇଦର ଅଲ୍ଲି ଓ ସାହାବ୍‌ଜାଙ୍କୁ ମୁକ୍ତ କରିଦେଲେ । ହାଇଦର ଅଲ୍ଲି ଓ ତାଙ୍କ ପରିବାର ଏତେବେଳକୁ ବଡ଼ ଦରିଦ୍ର ଓ ଅସହାୟ ହୋଇ ପଡ଼ିଥିଲେ । ଶେଷରେ ସେମାନେ ମହୀଶୂରଠାରେ ହାଇଦର ସାହେବଙ୍କ ତତ୍ତ୍ୱାବଧାନରେ ରହିଲେ । ହାଇଦର ସାହେବ ସାହାବଜାଙ୍କୁ ମହୀଶୂରର ସର୍ବାଧିକାରୀ ନଞ୍ଜିରାଜଙ୍କ ସହିତ ପରିଚୟ କରାଇ ଦେଇଥିଲେ । ଏହି ସମୟରେ ହାଇଦର ସାହେବଙ୍କର ମୃତ୍ୟୁ ଘଟିଲା । ତାଙ୍କ ପୁତ୍ର ଅଲ୍ଲି ସାହେବ ମାଗ୍‌ଡାଗିରିଠାରେ ତିନିଶତ ପଦାତିକ ଏବଂ ସତୁରିଜଣ ଅଶ୍ୱାରୋହୀଙ୍କ ଉପରେ ସେନାପତି ହୋଇଥିଲେ । ତେଣୁ ହାଇଦର ସାହେବଙ୍କ ସୈନ୍ୟଦଳ ସାହାବଜାଙ୍କ ତତ୍ତ୍ୱାବଧାନକୁ ମାତ ହେଲେ ।

ହାଇଦର ଅଲ୍ଲି ନିରକ୍ଷର ଥିଲେ । କେହି କେହି କହନ୍ତି, ଆବାଲ୍ୟରୁ ନାନା ଘନଘଟାମୟ ପରିସ୍ଥିତିରେ ପଡ଼ି ସେ ପ୍ରାଥମିକ

ଶିକ୍ଷାର ସୁଯୋଗରୁ ବଞ୍ଚିତ ହୋଇଥିଲେ । ଅନ୍ୟ କେତେକଙ୍କ ମତରେ ସେ ବାଲ୍ୟକାଳରୁ ଶିକାର ପ୍ରଭୃତି ବିଦ୍ୟାରେ କୌତୂହଳୀ ଥିଲେ ଏବଂ ପଢ଼ାପଢ଼ି ପ୍ରତି ଦୃଷ୍ଟି ଦେଇ ନ ଥିଲେ । ବାଲ୍ୟକାଳରେ କୌଣସି ଶୃଙ୍ଖଳା ମାନି ଚଳିବା ତାଙ୍କର ପ୍ରକୃତିଗତ ନ ଥିଲା ।

୧୭୪୯ ଖ୍ରୀ:ଅ: ରେ ଦେବନହଲ୍ଲିଠାରେ ଗୋଟିଏ ଶିକାର ପ୍ରତିଯୋଗିତାରେ ଦକ୍ଷତା ଦେଖାଇ ହାଇଦର ମହୀଶୂରର ସର୍ବାଧିକାରୀ ନଞ୍ଜରାଜଙ୍କ ଦୃଷ୍ଟି ଆକର୍ଷଣ କରି ପାରିଥିଲେ । ତା'ଫଳରେ ସେ ପଚିଶ ଦଳ ଅଶ୍ୱାରୋହୀ ଏବଂ ଦୁଇଶତ ସିପାହୀଙ୍କ ଉପରେ ପ୍ରଭୁତ୍ୱ ଲାଭ କରିଥିଲେ । ଏହିଠାରେହିଁ ହାଇଦର ଅଲ୍ଲିଙ୍କର ପ୍ରଥମ ଭାଗ୍ୟୋଦୟର ଆଦ୍ୟ ରଶ୍ମିରେଖା ଅସ୍ପଷ୍ଟ ଭାବରେ ଦୃଷ୍ଟିଗୋଚର ହୋଇଥିଲା ।



# ତରୁଣର ସାଧନା

୧୭୪୯ ଖ୍ରୀ: ଅ: ବେଳକୁ ମହୀଶୂରରେ ଚିକ୍‌କା କୃଷ୍ଣରାଜ ରାଜତ୍ୱ କରୁଥାନ୍ତି । ସେ କେବଳ ନାମକୁ ମାତ୍ର ରାଜା । ବାସ୍ତବିକ୍ ମହୀଶୂର ସରକାରଙ୍କର ସମସ୍ତ କ୍ଷମତା ଯୋଡ଼ିଏ ଭାଇଙ୍କ ହସ୍ତରେ ନିବଦ୍ଧ ଥାଏ—ଦେବରାଜ ଓ ନଞ୍ଜିରାଜ । ଏହି ଦୁଇଜଣ ବ୍ୟକ୍ତି ଚିକ୍‌କା କୃଷ୍ଣରାଜଙ୍କୁ ଗୋବରଗଣେଶରୂପେ ବସେଇ ତାହାଙ୍କର ସମସ୍ତ କ୍ଷମତା ଆତ୍ମସାତ୍ କରିଥାନ୍ତି । ଦେବରାଜ ଦଲ୍‌ୱାଇ ( ପ୍ରଧାନ ସେନାପତି ) ପଦରେ ଅଧିଷ୍ଠିତ ହୋଇଥାନ୍ତି ଏବଂ ନଞ୍ଜିରାଜ ସର୍ବାଧିକାରୀରୂପେ କାର୍ଯ୍ୟ କରୁଥାନ୍ତି । ଅର୍ଥାତ୍ ନଞ୍ଜିରାଜଙ୍କ ହସ୍ତରେ ଅର୍ଥ ଓ ରାଜସ୍ୱ ବିଭାଗର ପରିଚାଳନା ଭାର ଥାଏ ।

ମରହଟ୍ଟାମାନେ ମହୀଶୂର ରାଜ୍ୟକୁ ଘନ ଘନ ଆକ୍ରମଣ କରିବାରୁ ନଞ୍ଜିରାଜ ଓ ଦେବରାଜ ହାଇଦ୍ରାବାଦର ନିଜାମଙ୍କ ପକ୍ଷକୁ ଆଉଜିଲେ । ଏହି ସମୟରେ ଉତ୍ତରାଧିକାର ନିମିତ୍ତ ହାଇଦ୍ରାବାଦ୍ ନିଜାମଙ୍କ ପୁତ୍ର ନସିରଜଙ୍ଗ ଏବଂ ପୌତ୍ର ମୁଜାଫର ଜଙ୍ଗଙ୍କ ମଧ୍ୟରେ କଳହ ହେଲା । ଠିକ୍ ସେତିକିବେଳେ କର୍ଣ୍ଣାଟର ବୃଦ୍ଧ ନବାବ ଅନୱାରୁଦ୍ଦିନ ମରିଯିବାରୁ ସେଠାରେ ନବାବଙ୍କ ପୁତ୍ର ମହମ୍ମଦ ଅଲ୍ଲି ଏବଂ ଜାମାତା

ଗୃନ୍ଦାସାହେବଙ୍କ ମଧ୍ୟରେ ଦ୍ୱନ୍ଦ୍ୱ ଆରମ୍ଭ ହେଲା । ନାସିରଜଙ୍ଗ ଓ ମହମ୍ମଦ ଅଲ୍ଲି ଇଂରେଜମାନଙ୍କର ସାହାଯ୍ୟ ନେଲେ । ମୁଜାଫରଜଙ୍ଗ୍ ଓ ଗୃନ୍ଦାସାହେବ ଫରାସୀମାନଙ୍କ ସାହାଯ୍ୟ ନେଲେ । ଏହି ଯୁଦ୍ଧରେ ନଞ୍ଜରାଜ ନାସିରଜଙ୍ଗଙ୍କ ପକ୍ଷ ଗ୍ରହଣ କରିଥିଲେ ।

ଉଚ୍ଚାଭିଳାଷୀ ହାଇଦର ସର୍ବଦା ଉଚ୍ଚକୁ ଉଠିବାକୁ ଚେଷ୍ଟା କରୁଥିଲେ । ସାଧକର ନୀରବ ସାଧନା କଦାପି ବ୍ୟର୍ଥ ହୁଏ ନାହିଁ । ଏତେବେଳକୁ ହାଇଦର ଅଲ୍ଲି ପାଞ୍ଚଶତ ପଦାତିକ ଏବଂ କେତେଗୁଡ଼ିଏ ଅଶ୍ୱାରୋହୀଙ୍କ ଉପରେ ସର୍ଦ୍ଦାର ହୋଇ-ସାରିଲେଣି । ଏହି ଯୁଦ୍ଧରେ ହାଇଦର ଅଲ୍ଲି ଅଂଶଗ୍ରହଣ କରିଥିଲେ । ଏଥି ମଧ୍ୟରେ ନାସିରଜଙ୍ଗ ନିହତ ହେଲେ । ନାସିରଜଙ୍ଗଙ୍କ ହତ୍ୟା ଯୋଗୁଁ ଯେଉଁ ବିଶୃଙ୍ଖଳା ଉପସ୍ଥିତ ହେଲା ସେହି ବିଶୃଙ୍ଖଳା ମଧ୍ୟରେ ହାଇଦରଙ୍କ ସୈନ୍ୟମାନେ ହାଇଦରଙ୍କ ପାଇଁ ପ୍ରଚୁର ସୁନା ଲୁଟିକଲେ ଏବଂ ସେ ସବୁ ଓଟରେ ବୋଝାଇ କରି ହାଇଦରଙ୍କ ଗୃହ ଦେବନହଲିଠାକୁ ଘେନି ଆସିଲେ । ଏହି ବିପୁଳ ଧନ ଲାଭ କରି ହାଇଦର ଅଲ୍ଲି ନିଜର ସୈନ୍ୟବାହିନୀକୁ ନୂଆ ଢଙ୍ଗରେ ଗଢ଼ିବାକୁ ଆରମ୍ଭ କଲେ । ସେ ସେମାନଙ୍କୁ ପାଶ୍ଚାତ୍ୟ ଯୁଦ୍ଧ କୌଶଳରେ ପ୍ରବୀଣ କରିବା ପାଇଁ ଫରାସୀ ଶିକ୍ଷାଦାତା ନିଯୁକ୍ତ କଲେ । ଫଳରେ ସେ ପାଞ୍ଚଶତ ସୈନ୍ୟ ଏବଂ ଦୁଇଶତ ଯୁଦ୍ଧ ଘୋଡ଼ାଙ୍କୁ ସୁଦକ୍ଷ ଏବଂ ନିପୁଣ କରି ଗଢ଼ିନେଲେ । ଏହି ସୈନ୍ୟମାନଙ୍କର ଆଗ୍ନେୟାସ୍ତ୍ର ବ୍ୟବହାରର କାଇଦା ଦେଖି ନିଜେ ନଞ୍ଜରାଜ ମଧ୍ୟ ଚମତ୍କୃତ ହୋଇଯାଇଥିଲେ ।

ତ୍ରିଚିନାପଲ୍ଲୀ ଇଂରେଜ ଓ ଫରାସୀମାନଙ୍କର ଦୀର୍ଘକାଳ-ବ୍ୟାପୀ ସମରକ୍ଷେତ୍ରରେ ପରିଣତ ହୋଇଥିଲା । ସେଠାରେ ସରଗରମ୍ ଆବହାଉଆ ମଧ୍ୟରେ ହାଇଦର ବହୁ ଆଶ୍ଚର୍ଯ୍ୟ-ଜନକ ତଥା ନୂତନ ନୂତନ ଅନୁଭୂତି ଲାଭକଲେ । ବହୁ ବିଷୟ ପର୍ଯ୍ୟବେକ୍ଷଣ କରିବାର ସୁଯୋଗ ପାଇଲେ । ଏଠାରେ ସେ ପାଶ୍ଚାତ୍ୟ ପ୍ରଣାଳୀରେ ଆକ୍ରମଣ ଏବଂ ଆତ୍ମରକ୍ଷାର ବିଶେଷତ୍ୱ ଉପଲବ୍ଧି କଲେ । ତ୍ରିଚିନାପଲ୍ଲୀ ହାଇଦରଙ୍କର ଗୋଟିଏ ବଡ଼ ଶିକ୍ଷାକ୍ଷେତ୍ର ଥିଲା । ଇଂରେଜ ଓ ଫରାସୀମାନଙ୍କ ମଧ୍ୟରେ ଲାଗିଥିବା ଏହି ଘନଘଟା ମଧ୍ୟରେ ହାଇଦରଅଲ୍ଲି ନିଜର ସୈନ୍ୟବାହିନୀ ଧରି ବହୁ ଦେଶ ଆକ୍ରମଣରେ ଯୋଗ ଦେଇଥିଲେ । ଶୃଙ୍ଖଳାରକ୍ଷା ପାଶ୍ଚାତ୍ୟ ସୈନ୍ୟମାନଙ୍କର ଏକ ବଡ଼ ଗୁଣ । ଭାରତୀୟ ସୈନ୍ୟମାନଙ୍କ ମଧ୍ୟରେ ଏହି ଶୃଙ୍ଖଳା ଗୁଣର ବଡ଼ ଅଭାବ, ଏକଥା ହାଇଦରଅଲ୍ଲି ମର୍ମେ ମର୍ମେ ଅନୁଭବ କରୁଥିଲେ ଏବଂ ନିଜ ସୈନ୍ୟବାହିନୀ ମଧ୍ୟରେ ଏହି ଶୃଙ୍ଖଳା ରଖିବା ନିମିତ୍ତ ସେ ପ୍ରାଣପଣେ ଯତ୍ନ କଲେ । ତ୍ରିଚିନାପଲ୍ଲୀ ଗଣ୍ଡଗୋଳ ସମୟରେ ମହୀଶୂର ପକ୍ଷରୁ ହାଇଦର ଅଲ୍ଲି ଓ ହରିସିଂହ ଖୁବ୍ ସାହସର ସହିତ ଯୁଦ୍ଧ କରିଥିଲେ । କିନ୍ତୁ ଏହି ଦୁଇଜଣ ପରେ ପରସ୍ପର ପ୍ରତି ଶତ୍ରୁଭାବାପନ୍ନ ହୋଇ ପଡ଼ିଲେ ।

୧୭୫୬ ଖ୍ରୀ: ଅ: ବେଳକୁ ନଞ୍ଜରାଜ ଏବଂ ଇଂରେଜଙ୍କ ମଧ୍ୟରେ କଳହ ଆରମ୍ଭ ହେଲା । ମେଜର ଲରେନ୍ସ ଗୋପନରେ ଆଦେଶ ଦେଲେ ଯେ କ୍ୟାପ୍‌ଟେନ ଡାଲଟନଙ୍କ ସହିତ କୌଣସି ଆଲୋଚନା ସମୟରେ ନଞ୍ଜରାଜଙ୍କୁ ବନ୍ଦୀ କରିବାକୁ ହେବ । କିନ୍ତୁ ଏହା ସଫଳ ନ ହେବାରୁ ଇଂରେଜମାନେ ଆଉ ଏକ

ଉପାୟ ଅବଲମ୍ବନ କଲେ । କଥିତ ଅଛି, ମହମ୍ମଦ ଅଲ୍ଲି ନଞ୍ଜରାଜଙ୍କୁ ଅନୁରୋଧ କଲେ ଯେ ନଞ୍ଜରାଜ ସ୍ୱୟଂ ମହମ୍ମଦ ଅଲ୍ଲିଙ୍କ ସେନାପତିମାନଙ୍କୁ ନେଇ ଆର୍କଟ ଦୁର୍ଗ ଅଧିକାର କରନ୍ତୁ । ତଦନୁସାରେ ନଞ୍ଜରାଜ ଅଗ୍ରସର ହେଲେ ଏବଂ ଦୁର୍ଗର ପ୍ରଥମ ଫାଟକ ଭେଦିଗଲେ । କିନ୍ତୁ ବୁଦ୍ଧିମାନ ହାଇଦର ଏହାପରି ଏକ ଚକ୍ରାନ୍ତ ରହିଛି ବୋଲି ନିଜର ରାଜନୈତିକ ଦିବ୍ୟଦୃଷ୍ଟି ବଳରେ ଜାଣିପାରିଲେ । ତେଣୁ ସେ ନଞ୍ଜରାଜଙ୍କୁ ସାବଧାନ କରିଦେଲେ । ଫଳରେ ନଞ୍ଜରାଜ ନିଜେ ଫେରିଆସିଲେ ଏବଂ ପାଞ୍ଚଶତ ସୈନ୍ୟବିଶିଷ୍ଟ ଗୋଟିଏ ବାହିନୀ ଦୁର୍ଗର ଅଭ୍ୟନ୍ତରକୁ ପ୍ରେରଣ କଲେ । ଏହି ଘଟଣାରୁ ହାଇଦର ଅଲ୍ଲିଙ୍କର ତୀକ୍ଷ୍ଣ ଦୃଷ୍ଟିର ସ୍ପଷ୍ଟ ପରିଚୟ ମିଳେ ।

ତ୍ରିଚିନାପଲ୍ଲୀ ଅନୁଭୂତିରୁ ହାଇଦର ଅଲ୍ଲି ବହୁତ କିଛି ଶିକ୍ଷା କରିଥିଲେ । ସେ ନଞ୍ଜରାଜ ଓ ମରହଟ୍ଟାମାନଙ୍କ ମନରେ ସ୍ୱୀୟ କାର୍ଯ୍ୟାବଳୀ ଦ୍ୱାରା ନିଜ ସମ୍ପର୍କରେ ଗୋଟିଏ ଉଚ୍ଚ ଧାରଣା ଦେଇ ପାରିଥିଲେ । ହାଇଦରଙ୍କ ପ୍ରତିଯୋଗୀ ହରିସିଂହ କେବଳ ମାତ୍ର ନାମ ଅର୍ଜନ କରିଥିଲେ । କିନ୍ତୁ ହାଇଦର ଅଲ୍ଲି ନାମ ଓ ଯଶ ଅର୍ଜନ ସଙ୍ଗେ ସଙ୍ଗେ ନିଜର ଉଚ୍ଚାଭିଳାଷକୁ କାର୍ଯ୍ୟକାରୀ କରିବା-ପାଇଁ କୌଶଳର ସହିତ ଗୁଡ଼ିଏ ଧନ ଓ ଅସ୍ତ୍ରଶସ୍ତ୍ର ସଂଗ୍ରହ କରି ନେଇଥିଲେ । ଐତିହାସିକ ଓରମ୍ ( Orme ) ହାଇଦର୍ ଅଲ୍ଲିଙ୍କୁ ତ୍ରିଚିନାପଲ୍ଲୀରେ ମହୀଶୂରର ସର୍ବଶ୍ରେଷ୍ଠ ରାଜକର୍ମଚାରୀ ବୋଲି ଆଖ୍ୟା ଦେଇଛନ୍ତି । ତ୍ରିଚିନାପଲ୍ଲୀରେ ହାଇଦର ଅଲ୍ଲିଙ୍କ ବଳ କୌଶଳରେ ମୁଗ୍ଧ ହୋଇ ଫରାସୀ ଶାସନକର୍ତ୍ତା ଡୁପ୍ଲେ ତାଙ୍କ ନିକଟକୁ ଉପଢୌକନମାନ ପଠାଇଥିଲେ । ଏତେବେଳକୁ ହାଇଦର୍

ପନ୍ଦରଶ' ଯୁଦ୍ଧଘୋଟକ ଓ ଚଉସଠିଲଗ୍ନ ଆରୋହୀ, ତିନ ସହସ୍ର ସ୍ଥାୟୀ ପଦାତିକ, ଦୁଇହଜାର ସଶସ୍ତ୍ର ପ୍ରହରୀ ସୈନ୍ୟ ଓ ଷୋଳଟି ବନ୍ଧୁକର ଅଧିକାରୀ ହୋଇ ବସିଥିଲେ ।

ଓଣ୍ଡିଗଲ—ଏହି ରାଜ୍ୟଟି ୧୭୪୫ ଖ୍ରୀ: ଅ: ରୁ ମହୀଶୂର ସରକାରଙ୍କର ଅଧିକାରଭୁକ୍ତ ହୋଇ ସାରିଥିଲା । କିନ୍ତୁ ମଦୁରା-ଟିନାଭେଲି ଅଞ୍ଚଳରେ ଇଂରେଜମାନେ ମହମ୍ମଦ ଅଲ୍ଲିଙ୍କର ଆଧିପତ୍ୟ ପ୍ରତିଷ୍ଠା କରିବା ପାଇଁ ଚେଷ୍ଟା କରୁଥିଲେ । ଓଣ୍ଡିଗଲ୍ ଅନ୍ତର୍ବର୍ତ୍ତୀ କାଲିବାଗାଅଧିବାସୀ ଦୁଇଜଣ ପଲିଗାର ଜାତୀୟ ନେତା ମହମ୍ମଦ ଅଲ୍ଲିଙ୍କ ଶିକ୍ଷାରେ ପଡ଼ି ମହୀଶୂର ସରକାରଙ୍କୁ ଖଜଣା ଦେବା ବନ୍ଦ କରିଦେଲେ । ଏହି ବିଦ୍ରୋହୀ ପଲିଗାରମାନଙ୍କୁ ଦମନ କରିବା ପାଇଁ ଏବଂ ମଦୁରାଠାରେ ଇଂରେଜମାନଙ୍କର ଗତିବିଧି ଲକ୍ଷ୍ୟ କରିବା ପାଇଁ ଜଣେ ସୁଦକ୍ଷ କର୍ମଚାରୀର ଆବଶ୍ୟକ ପଡ଼ିଲା । ଏଥିପାଇଁ ହାଇଦର ଅଲ୍ଲିଙ୍କ ଉପରେ ସମସ୍ତଙ୍କର ଦୃଷ୍ଟି ପଡ଼ିଲା । କେବଳ ହାଇଦର ଅଲ୍ଲି ହିଁ ଏଥିପାଇଁ ଯୋଗ୍ୟ ବିବେଚିତ ହେଲେ । ସେ ଓଣ୍ଡିଗଲର ଫୌଜଦାର ରୂପେ ମନୋନୀତ ହୋଇ ସେହି ପଦରେ ଅଧିଷ୍ଠିତ ହେଲେ । ଓଣ୍ଡିଗଲକୁ ଯାତ୍ରା କଲାବେଳେ ହାଇଦରଙ୍କ ଅଧୀନରେ ଛ' ଗୋଟି ବନ୍ଧୁକ ସହିତ ପାଞ୍ଚହଜାର ସ୍ଥାୟୀ ପଦାତିକ, ଅଢ଼େଇହଜାର ଯୁଦ୍ଧଘୋଟକ ଏବଂ ଦୁଇ ହଜାର ପ୍ରହରୀ ସୈନ୍ୟ ରହିଥିଲେ ।



# ଡିଣ୍ଡିଗଲର ଫୌଜଦାର

ଆମ୍ଭମାନଙ୍କର ଏହି ନୂତନ ଫୌଜଦାର ସଦଳବଳ ଡିଣ୍ଡିଗଲ୍ ଯାତ୍ରା କଲେ । ସେତେବେଳେ ପିଲ୍ଲନ ଓ ବରୁପକ୍ଷୀର ଦୁଇଜଣ ପଲ୍ଲିଗାର୍ (ଅମ୍ମି ନାୟକ ଓ ଅପ୍ପି ନାୟକ)ଙ୍କ ନେତୃତ୍ୱରେ ସମସ୍ତ ପଲଗାର ଜାତି ବିଦ୍ରୋହ କରିଥାନ୍ତି । ଏହି ବିଦ୍ରୋହୀ ପଲଗାର୍‌ମାନଙ୍କୁ ଦମନ କରିବା ହାଇଦର୍ ଅଲ୍ଲିଙ୍କର ପ୍ରଥମ ଲକ୍ଷ୍ୟ ଥିଲା । କିନ୍ତୁ ଡିଣ୍ଡିଗଲରେ ପ୍ରବେଶ କରିବା ତାଙ୍କ ପକ୍ଷେ ସହଜସାଧ୍ୟ ହେବନାହିଁ ବୋଲି ଜାଣି ସେ ପଲଗାର-ମାନଙ୍କ ନିକଟରେ ବନ୍ଧୁଭାବର ଛଳନା କଲେ ଏବଂ ସେମାନଙ୍କୁ କରଭାରରୁ ବହୁ ପରିମାଣରେ ମୁକ୍ତ ଦେବେ ବୋଲି ପ୍ରକାଶ କଲେ । ଏଥିରେ କୃତକାର୍ଯ୍ୟ ହୋଇ ସେ ଡିଣ୍ଡିଗଲ୍ ମଧ୍ୟରେ ପ୍ରବେଶ କଲେ ଏବଂ ସେଠାରେ ଆକ୍ରମଣମୂଳକ ଯୋଜନାମାନ ଗଢ଼ିବାରେ ନିବିଷ୍ଟ ରହିଲେ ।

ହାଇଦର ଅଲ୍ଲିଙ୍କ ଅଧୀନରେ ପଲଗାରଅଧ୍ୟୁଷିତ ଛବିଶଟି ବୃହତ୍ ଜମିଦାରୀ ରହିଥିଲା । କିନ୍ତୁ ଏମାନଙ୍କ ମଧ୍ୟରେ ଏକତା ଓ ସହାନୁଭୂତିର ଅଭାବ ଥିବାରୁ ତାହା ହାଇଦରଙ୍କ ଲକ୍ଷ୍ୟ ପ୍ରତି ଅନୁକୂଳ ହେଲା । ସେ ପଲଗାର୍ ଧର୍ଷଣ କାର୍ଯ୍ୟ ତୀବ୍ର ଭାବରେ ଆରମ୍ଭ କରି-ଦେଲେ । କନ୍ନିବାଡ଼ିର ପଲଗାର୍ ଜମିଦାର ସମୁଦାୟ ଟଙ୍କା

ଦେବାକୁ ଅସମର୍ଥ ହେବାରୁ ବନ୍ଦୀହୋଇ ବାଙ୍ଗାଲୋରକୁ ସ୍ଥାନାନ୍ତରିତ ହେଲେ । ପିଲନସ୍ଥ ସମସ୍ତ ଧନରତ୍ନ ହାଇଦରଙ୍କ ସୈନ୍ୟମାନେ ଲୁଟି କରିନେଲେ । ବନ୍ଧୁପକ୍ଷୀ ମଧ୍ୟ ସମଦଶାପନ୍ନ ହେଲେ । ହାଇଦର ଜୋରିମାନା ସ୍ୱରୂପରେ ପଲିଗାର ଜମିଦାରମାନଙ୍କଠାରୁ ପ୍ରଚୁର ଅର୍ଥ ସଂଗ୍ରହ କଲେ । ସଂଗଠିତ ଲୁଟତରାଜରୁ ମଧ୍ୟ ସେ ପ୍ରଚୁର ଧନ ଲାଭ କଲେ । ଆପଣାର ଉଚ୍ଚାଭିଳାଷକୁ ବାସ୍ତବ ରୂପ ଦେବାପାଇଁ ତାଙ୍କର ଦରକାର ଅର୍ଥ । ସେଥିପାଇଁ ସେ ପଲିଗାର୍‌ମାନଙ୍କଠାରୁ ଲୁଟି ଓ ଜୋରିମାନା ସ୍ୱରୂପରେ ଯାହା ନେଲେ, ନେଲେ ; ଏହାଛଡ଼ା ସେ ନିମ୍ନଲିଖିତ ସୂତ୍ରରେ ଆହୁରି ଗୁଡ଼ିଏ ଧନ ପୁଞ୍ଜୀଭୂତ କଲେ ।

ଡିଣ୍ଡିଗଲ୍‌ଠାରେ ଗୋଟିଏ ସାଧାରଣ ଗଣ୍ଡଗୋଳରେ ମାତ୍ର ସତଷଠି ଜଣ ସୈନ୍ୟ ଆହତ ହୋଇଥିଲେ । କିନ୍ତୁ ହାଇଦର୍ ମିଥ୍ୟା ବିବରଣୀ ଦେଇ ମହୀଶୂର ସରକାରଙ୍କଠାରୁ ସାତଶ' ଲୋକଙ୍କର ଖର୍ଚ୍ଚ ମଞ୍ଜୁର କରି ଆଣିଲେ । ଡିଣ୍ଡିଗଲ୍ ଗଣ୍ଡଗୋଳର ଅତିରଞ୍ଜିତ ବର୍ଣ୍ଣନା ଦେଇ ସେ ନିଜର ସୈନ୍ୟସଂଖ୍ୟା ଅଠର ହଜାରକୁ ବର୍ଦ୍ଧିତ କରିବା ପାଇଁ ମହୀଶୂର ସରକାରଙ୍କଠାରୁ ଅନୁମତି ଲାଭକଲେ । ଏହିପରି ଭାବରେ ହାଇଦର୍ ପ୍ରାୟ କୋଡ଼ିଏ ଲକ୍ଷ ଟଙ୍କା ସଂଗ୍ରହ କଲେ । ତହିଁ ସଙ୍ଗେ ସଙ୍ଗେ ନିଜର ସୈନ୍ୟବାହିନୀକୁ ତାଲିମ୍ କରିବା ପାଇଁ ସେ ଫରାସୀ ବିଶେଷଜ୍ଞମାନଙ୍କୁ ନିଯୁକ୍ତ କରିଥିଲେ ।

ଏତିକିବେଳେ ମଦୁରାର ଜମିଦାରଗଣ ତଥା ଟିନାଭେଲିର ପଲିଗାରବୃନ୍ଦ ଇଂରେଜ ଓ ମହମ୍ମଦ ଅଲ୍ଲିଙ୍କ ବିରୁଦ୍ଧରେ

ହାଇଦର ଅଲ୍ଲିଙ୍କର ସାହାଯ୍ୟ ଲୋଡ଼ିଲେ । ସେଥିପାଇଁ ସେମାନେ ମଦୁରା ଓ ଟେନାଭାଲି ମଧ୍ୟରେ ଏକମାତ୍ର ଯୋଗସୂତ୍ର ଏବଂ ଗୋଟିଏ ସୁଦୃଢ଼ ଦୁର୍ଗବିଶିଷ୍ଟ ସୋଲାଭେଣ୍ଡ୍ରମ ଜିଲ୍ଲା ହାଇଦର ଅଲ୍ଲିଙ୍କି ଅର୍ପଣ କରିବା ପାଇଁ ବଦ୍ଧପରିକର ହୋଇଥିଲେ । କିନ୍ତୁ ୧୭୫୭ ଖ୍ରୀ:ଅ:ରେ ହାଇଦର ଅଲ୍ଲି ଅସ୍ଥାୟୀ ଭାବରେ ମହୀଶୂରକୁ ଆହୂତ ହୋଇଯିବାରୁ ଏ ସୁଯୋଗର ସଦ୍-ବ୍ୟବହାର କରି ପାରିଲେ ନାହିଁ । ତେଣୁ ମଦୁରା ବ୍ରିଟିଶ୍‌ମାନଙ୍କ-ଠାରେ ଆତ୍ମସମର୍ପଣ କଲା । କିନ୍ତୁ ହାଇଦର ଅଲ୍ଲି ମହୀଶୂରରୁ ଫେରି ସୋଲାଭେଣ୍ଡ୍ରମ ଦୁର୍ଗ ବିନା ବାଧାରେ ଅଧିକାର କଲେ, ମଦୁରାରେ ପ୍ରବେଶ କରି ଲୁଟ୍‌ତରାଜ ଆରମ୍ଭ କରିଦେଲେ ଏବଂ ଲୁଟିଦ୍ରବ୍ୟସବୁ ଡିଣ୍ଡିଗଲ୍‌କୁ ପ୍ରେରଣ କଲେ । ମହମ୍ମଦ ଅଲ୍ଲିଙ୍କ ସେନାପତି ୟୁସୁଫ୍ ଖାଁ । ହାଇଦର ଅଲ୍ଲିଙ୍କୁ ଜଣେ ସୁଦକ୍ଷ ସେନାପତି ବୋଲି ବର୍ଣ୍ଣନା କରିଛନ୍ତି । ମଦୁରା ନଗରର ପ୍ରାଚୀର ବଡ଼ ଶକ୍ତ ଓ ଦୃଢ଼ ଥିଲା । ୟୁସୁଫ୍ ଖାଁଙ୍କର ସୁଶିକ୍ଷିତ ସୈନ୍ୟବାହିନୀଙ୍କ ଆକ୍ରମଣର ପ୍ରତିରୋଧ କରି ନ ପାରି ହାଇଦର ଅଲ୍ଲି ନିଜର ସୈନ୍ୟ-ମାନଙ୍କୁ ଏକାଠି କରି ଡିଣ୍ଡିଗଲ୍ ଚାଲି ଆସିଲେ ।



# କେନ୍ଦ୍ର ମହଲରେ ତୋଫାନ

ଏହି ସମୟରେ ମହୀଶୂରର ରାଜନୈତିକ ବାୟୁମଣ୍ଡଳରେ ଗୋଟିଏ ପ୍ରଳୟର ସୃଷ୍ଟି ହେଲା । ନଞ୍ଜରାଜ ଓ ଦେବରାଜ ମରହଟ୍ଟା ଓ ନିଜାମଙ୍କ କବଳରୁ ମହୀଶୂରକୁ ରକ୍ଷା କରିବା ପାଇଁ ଅସମର୍ଥ ହେଲେ । ତେଣୁ ସେମାନେ ଉକ୍ତ ଦୁଇ ଶକ୍ତିଙ୍କୁ ଅର୍ଥଦାନ-ଦ୍ୱାରା ବଶ କରିବା ପାଇଁ ପ୍ରସ୍ତାବ କଲେ । ହିନ୍ଦୁ ମନ୍ଦିରମାନଙ୍କରେ ଧନରତ୍ନ ଏବଂ ରାଜପରିବାରର ବ୍ୟକ୍ତିଗତ ଅଳଙ୍କାର ବିକ୍ରୀ କରି ମଧ୍ୟ ପ୍ରସ୍ତାବିତ ଅର୍ଥର ଏକତୃତୀୟାଂଶ ସଂଗ୍ରହ କରି ପାରିଲେ ନାହିଁ । ତେଣୁ ସେମାନେ ଦେଶୀୟ ଋଣଦାତା ବ୍ୟାଙ୍କମାନଙ୍କର ସାହାଯ୍ୟ ଲୋଡ଼ିଲେ । କିନ୍ତୁ ଋଣଦାତା ବ୍ୟାଙ୍କ୍‌ଗୁଡ଼ିକର ତାଙ୍କଠାରେ ବିଶ୍ୱାସ ନ ଥିବାରୁ ଏ ପ୍ରସ୍ତାବରେ ରାଜି ହେଲେ ନାହିଁ । ଫଳରେ ମରହଟ୍ଟା ପେଶବା ବିଦ୍‌ନୂର, ବାସବ ପାଟଣା ଚିତଳଦୁର୍ଗ ଉପରେ ମରହଟ୍ଟା ଅଧିକାର ସାବ୍ୟସ୍ତ କଲେ । ଏହି ଘଟଣାରେ ପେଶବାଙ୍କ ସହିତ ତାଙ୍କ ସମ୍ପର୍କୀୟ ସଦାଶିବ ଚିମ୍‌ନାଜି ମଧ୍ୟ ଆସିଥିଲେ । ସେମାନେ ସମୁଦାୟ ମହୀଶୂରକୁ ମଧ୍ୟ ଦାବି କରି ବସିଥାନ୍ତେ । ମାତ୍ର ଏଥିରେ ଫରାସୀ ସେନାପତି ବୁସିଙ୍କର ସମର୍ଥନ ନ ଥିବାରୁ ସେମାନେ ଉଲ୍ଲିଖିତ କେତେକ ଅଞ୍ଚଳରେ ମରହଟ୍ଟା ଦାବି ସାବ୍ୟସ୍ତ କରି ନେଇଗଲେ ।

ହିଶନାପଲ୍ଲୀଠାରେ ନଞ୍ଜରାଜାଙ୍କର ଅଦୂରଦର୍ଶିତା ଏବଂ ପେଶବା ଓ ନିଜାମଙ୍କ ନିକଟରେ ଦୁଇ ଭାଇଙ୍କର ଶୋଚନୀୟ ପରାଜୟ ନଞ୍ଜରାଜ ଓ ଦେବରାଜଙ୍କର ସମସ୍ତ ମହତ୍ତ୍ୱ ଖର୍ବ କରିଦେଲା । ନଞ୍ଜରାଜ ଓ ଦେବରାଜ ମହୀଶୂର ରାଜାଙ୍କର ସମସ୍ତ କ୍ଷମତା ଆତ୍ମସାତ୍ କରି ମହୀଶୂର ରାଜାଙ୍କୁ ବନ୍ଦୀ କଲାପରି ରଖିଥିଲେ । କିନ୍ତୁ ଏହି ଦୁଇ ଭାଇ ଲୋକପ୍ରିୟତା ହରେଇ ବସିବାରୁ ତାହାର ସୁଯୋଗ ନେଇ ମହୀଶୂର ରାଜା ଏହାଙ୍କ କବଳରୁ ମୁକ୍ତ ହେବାପାଇଁ ଷଡ଼ଯନ୍ତ୍ର କଲେ । ପଣ୍ଡିତ ଭେଙ୍କେଟ୍‌ପନ୍ତ ଆପ୍ପାନ ପୂର୍ବେ ମହୀଶୂର ରାଜାଙ୍କର ସର୍ବାଧିକାରୀ ଥିଲେ । ତାଙ୍କରି ସାହାଯ୍ୟରେ ନଞ୍ଜରାଜଙ୍କୁ ବନ୍ଦୀକରି ପଣ୍ଡିତ ଆପ୍ପାନଙ୍କୁ ସର୍ବାଧିକାରୀ ପଦରେ ନିଯୁକ୍ତ କରିବା ପାଇଁ ମହୀଶୂର ରାଜା ଗୋପନରେ ସଚେଷ୍ଟ ରହିଲେ । ଏ ଘଟଣା ଜାଣିପାରି ନଞ୍ଜରାଜ ଚାରି ହଜାର ସୈନ୍ୟ ଧରି ରାଜବାଟୀ ଆକ୍ରମଣ କରିବାକୁ ବସିଲେ । କିନ୍ତୁ ଦେବରାଜ ତାଙ୍କୁ ଏ କାର୍ଯ୍ୟରୁ ନିବୃତ୍ତ କଲେ । ତଥାପି ନଞ୍ଜରାଜ ରାଜବାଟୀରେ ପ୍ରହରୀସବୁ ଜଗାଇଦେଲେ । ଭେଂକଟପନ୍ତ ଆପ୍ପାନ୍‌ଙ୍କ ଘରଦ୍ୱାର ଲୁଟିକରି ତାଙ୍କୁ ସସ୍ତ୍ରୀକ ବନ୍ଦୀ କଲେ । ତାଂକ ପୁତ୍ର ଓ ଜାମାତାଙ୍କୁ ସ୍ଥାନାନ୍ତରରେ ବନ୍ଦୀ କଲେ ।

ଏଥି ମଧ୍ୟରେ କେତେକ ମାସ ଅତିକ୍ରମ କରିଗଲା । ମହୀଶୂରର ରାଜା ନଞ୍ଜରାଜଙ୍କ ଆଧିପତ୍ୟରୁ ମୁକ୍ତିଲାଭ କରିବା ପାଇଁ ଅସ୍ଥିର ହୋଇ ପଡ଼ିଲେ । ଏତିକିବେଳେ ଶୁଣାଗଲା ଯେ ରାଜାସାହେବ୍ ଦେବରାଜ ଓ ନଞ୍ଜରାଜଙ୍କ ବିରୁଦ୍ଧରେ ହାଇଦର୍ ଅଲ୍ଲିଙ୍କ ବଡ଼ଭାଇ ସାହାବ୍‌ଜା ଓ ହାଇଦର୍‌ଙ୍କ ଦେଓ୍ୱାନ୍ ଖାଣ୍ଡେରାଓଙ୍କଠାରେ ସାହାଯ୍ୟ ଭିକ୍ଷା କରିଛନ୍ତି ।

ଏଥିରେ କ୍ରୋଧାନ୍ୱିତ ହୋଇ ଦେବରାଜ ଓ ନଞ୍ଜରାଜ ଦୁର୍ଗ ଫାଟକ ସବୁ ବନ୍ଦ କରିଦେବା ପାଇଁ ଆଦେଶ ଦେଲେ । ରାତି ପାହିଲେ ରାଜା ସାହେବଙ୍କୁ ହତ୍ୟା କରିବା ପାଇଁ ସେମାନେ ପ୍ରସ୍ତୁତ ହୋଇ ରହିଲେ । କିନ୍ତୁ ନିଜେ ରାଜାସାହେବ ପ୍ରାୟ ଏକହଜାର ସୈନ୍ୟ ଧରି ନଞ୍ଜରାଜଙ୍କ ସୈନ୍ୟବାହିନୀକୁ ବହୁସଂଖ୍ୟାରେ ହତ୍ୟା କଲେ । ରାଜାସାହେବ ରାଜବାଟୀକି ଫେରିଯିବାରୁ ନଞ୍ଜରାଜ ବନ୍ଧୁକ ଫୁଟାଇ ରାଜପରିବାରର ଏକଶତ ଲୋକଙ୍କୁ ହତ୍ୟା କଲେ । ତତ୍ପରେ ନଞ୍ଜରାଜ ଓ ଦେବରାଜ ରାଜବାଟୀ ମଧ୍ୟରେ ପ୍ରବେଶ କରି ରାଜାଙ୍କୁ ହତ୍ୟା କରିବାକୁ ବସିଲେ । କିନ୍ତୁ ରାଣୀ ରାଜାଙ୍କୁ ସମ୍ମୁଖ ପଟରୁ କୁଣ୍ଢାଇ-ଧରି ପାଟିକରି କହିଲେ, "ମୋ ସ୍ୱାମୀଙ୍କି ହତ୍ୟା କରିବା ପୂର୍ବରୁ ମୋତେ ଆଗହତ୍ୟା କର ।" ତହୁଁ ନଞ୍ଜରାଜ ଓ ଦେବରାଜ ରାଜା ତଥା ରାଜପରିବାରକୁ ବନ୍ଦୀ କରିବା ପାଇଁ ସ୍ଥିର କଲେ । ଇତି-ମଧ୍ୟରେ ରାଜାସାହେବ ଏ ଘଟଣା ସମ୍ପର୍କରେ ମରହଟ୍ଟା ପେଶବା ବାଲାଜି ବାଜିରାଓଙ୍କ ନିକଟକୁ ପତ୍ର ଲେଖିଥିଲେ । ପେଶବାଙ୍କ ଉକିଲ୍, ନଞ୍ଜରାଜ ଓ ଦେବରାଜଙ୍କର ରାଜପରିବାର ପ୍ରତି ଏତାଦୃଶ ବ୍ୟବହାରର ତୀବ୍ର ପ୍ରତିବାଦ କରି ପତ୍ର ଦେଇଥିଲେ ।

ଦେବରାଜ ଓ ନଞ୍ଜରାଜଙ୍କ ମଧ୍ୟରେ ସର୍ବଦା ମାତିଗତ ମତଦ୍ୱୈଧ ଘଟୁଥିଲା । ଦେବରାଜ ବାର୍ଦ୍ଧକ୍ୟ ଓ ଜରାଗ୍ରସ୍ତ ହୋଇପଡ଼ିଥିଲେ । ତେଣୁ ସେ ମହୀଶୂର ରାଜନୀତିରୁ ଅବସର ନେବାପାଇଁ ଶ୍ରେୟସ୍କର ମଣିଲେ । ସେ ନିଜର ପରିବାର, ଲୋକବାକ, ଏକହଜାର ଘୋଟକ ଏବଂ ଦୁଇହଜାର ପ୍ରହରୀସୈନ୍ୟ ସହ ୧୭୫୭ ଖ୍ରୀ:ଅ: ଫେବୃଆରୀ ମାସରେ ସତ୍ୟମଙ୍ଗଲମ୍ ଚାଲିଯାଇ ସେଠାରେ ଅବସ୍ଥାନ କଲେ । ସେଠାରୁ ସେ ସମସ୍ତ ଦେୟ

ଦେଇଦେବା ପାଇଁ ହାଇଦର୍‌ଙ୍କ ଉପରେ ନୋଟିସ ଜାରିକଲେ । ତେଣୁ ହାଇଦର ଅଲିଙ୍କୁ ପୁଣି ଥରେ ଡିଣ୍ଡିଗଲରୁ ଆସିବାକୁ ପଡ଼ିଲା ।

ବର୍ତ୍ତମାନ ନଞ୍ଜରାଜ ମହୀଶୂରର ଏକମାତ୍ର ସର୍ବେସର୍ବା । ତାଙ୍କ ବିରୁଦ୍ଧରେ ଛିଡ଼ା ହେବାପାଇଁ ମହୀଶୂର ରାଜା ଶକ୍ତିହୀନ । କିନ୍ତୁ ଏତିକିବେଳେ ମରହଟ୍ଟାମାନେ ଆସି ଶ୍ରୀରଙ୍ଗପତ୍ତନଠାରେ ନଞ୍ଜରାଜଙ୍କୁ ଘେରାଉ କରିଦେଲେ । ସଦାଶିବ ରାଓ ଭାଓ ତିରିଶଟି ବନ୍ଧୁକ ଫୁଟାଇବାରୁ ରଙ୍ଗାସ୍ୱାମୀଙ୍କ ମନ୍ଦିର ଗାତ୍ରରେ ଆଘାତ ଲାଗିଲା । ଉଭୟ ପକ୍ଷ ଦେବ ଅଭିଶାପ ଆଶଙ୍କାରେ ଯୁଦ୍ଧରୁ ନିବୃତ୍ତ ହୋଇ ଚୁକ୍ତି ଉପରକୁ ଆସିଲେ । ନଞ୍ଜରାଜ ମରହଟ୍ଟା-ମାନଙ୍କୁ ବତିଶ ଲକ୍ଷ ଟଙ୍କା ଦେବାକୁ ସ୍ୱୀକୃତ ହେଲେ । କିନ୍ତୁ ସେ ମାତ୍ର ଛ' ଲକ୍ଷ ଟଙ୍କା ଦେଇ ଅବଶିଷ୍ଟ ଟଙ୍କା ପାଇଁ ତେରଟି ତାଲୁକ ମରହଟ୍ଟାମାନଙ୍କ ନିକଟରେ ବନ୍ଧା ରଖିଲେ ।

ମରହଟ୍ଟାମାନଙ୍କ ପ୍ରସ୍ଥାନ ପରେ ହାଇଦର ଅଲି ଡିଣ୍ଡିଗଲରୁ ଆସି ଶ୍ରୀରଙ୍ଗପତ୍ତନଠାରେ ପହଞ୍ଚିଲେ । ସେ ନିଜର ଅଧସ୍ତନ ସେନାପତିମାନଙ୍କୁ ଆଦେଶ ଦେଲେ ଯେ, ବର୍ଷାଋତୁ ଆସିଗଲେ ମରହଟ୍ଟାମାନଙ୍କୁ ଉକ୍ତ ତାଲୁକମାନଙ୍କରୁ ତଡ଼ିଦେବାପାଇଁ ହେବ । ସେତେବେଳେ କୃଷ୍ଣା ଓ ତୁଙ୍ଗଭଦ୍ରା ନଦୀରେ ବନ୍ୟା ହୋଇଥିବ । ମରହଟ୍ଟାମାନେ ନଦୀ ଅତିକ୍ରମ କରି ଆସି ପାରିବେ ନାହିଁ । ଏଥି ମଧ୍ୟରେ ସେ ନିଜେ ଡିଣ୍ଡିଗଲ୍‌ରୁ ସୈନ୍ୟସାମନ୍ତ ନେଇ ସେଠାରେ ଆସି ପହଞ୍ଚିବେ ।



# ଅର୍ଦ୍ଧ ଧରଣୀର ଅଧୀଶ୍ୱର

ନିଜାମଙ୍କ ଗୃହ ଏବଂ ମରହଟ୍ଟାମାନଙ୍କର ଘନ ଘନ ଅର୍ଥଶୋଷଣ ଫଳରେ ମହୀଶୂର ସରକାର ଦେବାଳିଆ ହୋଇ ପଡ଼ିଲେଣି । ସୈନ୍ୟମାନଙ୍କର ଦରମା ମାସ ମାସ ଧରି ବାକି ପଡ଼ୁଛି । ସୈନ୍ୟମାନେ ନଞ୍ଜରାଜଙ୍କ ଫାଟକ ପାଖରେ ଧାରଣା ଦେଇ ବସି ରହିଛନ୍ତି । ତେଣୁ ନଞ୍ଜରାଜଙ୍କ ଗୃହମଧ୍ୟକୁ ଜଳ ଓ ଅନ୍ୟାନ୍ୟ ଦ୍ରବ୍ୟ ଯାଇ ପାରୁନାହିଁ । ଏ ସମ୍ବାଦ ପାଇ ହାଇଦର ଅଳ୍ପି ଉଣ୍ଡିଗଲରୁ ସତ୍ୟମଙ୍ଗଳମ୍ ଗଲେ ଏବଂ ଏ ଅବସ୍ଥାରେ ନଞ୍ଜରାଜଙ୍କୁ ସହଯୋଗ ଦେଇ ମହୀଶୂର ସରକାରଙ୍କୁ ରକ୍ଷା କରିବା ପାଇଁ ଦେବରାଜଙ୍କୁ ଅନୁରୋଧ କଲେ । କିନ୍ତୁ ଦେବରାଜ ସେତେବେଳକୁ ବୁଢ଼ା ହୋଇଯାଇଥିଲେ । ତାଙ୍କ ଶରୀର ଭୀଷଣ ଭାବରେ ରୋଗାକ୍ରାନ୍ତ ହୋଇଥିଲା । ତେଣୁ ଅଳ୍ପ କିଛି ଦିନ ପରେ ସେ ଇହଲୀଳା ସମ୍ବରଣ କଲେ । କିନ୍ତୁ ଏଥି ପୂର୍ବରୁ ହାଇଦରଙ୍କ ଚେଷ୍ଟା ଯୋଗୁଁ ଦେବରାଜ ଓ ନଞ୍ଜରାଜଙ୍କ ମଧ୍ୟରେ ପୁନର୍ମିଳନ ସଂଘଟିତ ହୋଇଥିଲା । ଦେବରାଜଙ୍କ ଉପଦେଶ ମାନି ନଞ୍ଜରାଜ ନିଜର ପୂର୍ବ ବ୍ୟବହାର ପାଇଁ ମହୀଶୂର ରାଜାଙ୍କଠାରେ କ୍ଷମାଭିକ୍ଷା କରିଥିଲେ । ବର୍ତ୍ତମାନ ଏହି ଅର୍ଥନୈତିକ ସଙ୍କଟରୁ ସରକାରଙ୍କୁ ଉଦ୍ଧାର କରିବା ପାଇଁ ନଞ୍ଜରାଜ ହାଇଦରଙ୍କୁ ଅନୁରୋଧ କଲେ ।

ହାଇଦର ଅଲ୍ଲି ଏ ଦାୟିତ୍ୱଭାର ଗ୍ରହଣ କଲେ । ସେ ସୈନ୍ୟମାନଙ୍କୁ ଟଙ୍କା ନ ଦେଇ ସେହି ମୂଲ୍ୟର ହାତୀ, ଘୋଡ଼ା ଓ ଅନ୍ୟାନ୍ୟ ସର୍ବସାଧାରଣ ସମ୍ପତ୍ତିସବୁ ଦେଲେ । ସମସ୍ତ ଟଙ୍କାର ପ୍ରକୃତ ହିସାବ ପେଶ୍ କରିବା ପାଇଁ ସେ ପାଞ୍ଜିଆମାନଙ୍କୁ ବାଧ୍ୟ କଲେ । ଏହିପରି ଭାବରେ ସେ ଅଧିକାଂଶ ସୈନ୍ୟଙ୍କର ବାକି ଦରମା ସବୁ ସୁଝି ଦେଇ ସେମାନଙ୍କ ମଧ୍ୟରୁ ଅନେକଙ୍କୁ ବିଦାୟ ଦେଲେ ।

ଏହା ଫଳରେ ହାଇଦର ଅଲ୍ଲିଙ୍କର ପ୍ରଶଂସା ଓ ସ୍ଥାନ ବହୁତ ଉଚ୍ଚକୁ ଉଠିଗଲା । ଭାଇ ଦେବରାଜଙ୍କ ସଙ୍ଗେ ମୈତ୍ରୀ ପ୍ରତିଷ୍ଠା କରେଇ ଦେଇଥିବାରୁ ନଞ୍ଜରାଜ ହାଇଦରଙ୍କଠାରେ କୃତଜ୍ଞତା ପ୍ରକାଶ କଲେ । ମହୀଶୂରର ରାଜା ନଞ୍ଜରାଜଙ୍କ କବଳରୁ ନିଜକୁ ମୁକ୍ତ କରିବାପାଇଁ ହାଇଦର ଅଲ୍ଲିଙ୍କୁ ନିଜର ଏକମାତ୍ର ସାହାଯ୍ୟକର୍ତ୍ତା ବୋଲି ମନେ ମନେ ବରଣ କରିନେଲେ । ସୈନ୍ୟମାନେ ନିଜ ନିଜର ବାକି ପଡ଼ିଥିବା ଦରମାସବୁ ହାଇଦରଙ୍କ ସାହାଯ୍ୟରେ ପାଇଯାଇଥିବାରୁ ହାଇଦରଙ୍କ ପ୍ରତି ଅଶେଷ କୃତଜ୍ଞତା ଜ୍ଞାପନ କଲେ । ଏ ସବୁ ଦେଖି ହାଇଦର ବେଶ୍ ବୁଝି ପାରିଥିଲେ ଯେ ମହୀଶୂର ରାଜନୀତି କ୍ଷେତ୍ରରେ ତାଙ୍କର ସ୍ଥାନ କେଉଁଠି । କିନ୍ତୁ ତଥାପି ସେ ଏହା ହୃଦୟଙ୍ଗମ କରିପାରିଥିଲେ, ନଞ୍ଜରାଜଙ୍କୁ ତଡ଼ିବାର ଉପଯୁକ୍ତ ସମୟ ଅବଧି ଉପସ୍ଥିତ ହୋଇନାହିଁ ।

ହାଇଦର୍ ଅଲ୍ଲି ଦେଖିଲେ, ମହୀଶୂରରେ ତାଙ୍କର ବର୍ତ୍ତମାନ ଏକମାତ୍ର ପ୍ରତିଦ୍ୱନ୍ଦ୍ୱୀ ହେଉଛନ୍ତି ହରିସିଂହ । ହରିସିଂହଙ୍କୁ ନିର୍ମୂଳ କରିବା ପାଇଁ ହାଇଦର୍ ଅଲ୍ଲି ସୁଯୋଗ ଖୋଜୁଥା'ନ୍ତି । ଦେବରାଜ ହରିସିଂହଙ୍କର ଜଣେ ବଡ଼ ସମର୍ଥକ ଥିଲେ, କିନ୍ତୁ ସେ

ମରିଯାଇଥିଲେ । ଏପରି ଅବସ୍ଥାରେ ହରିସିଂହ ମହୀଶୂରରେ ବେଶୀ ଦିନ ଶୃଙ୍ଖଳା ରକ୍ଷା କରିବା ନିରାପଦ ମନେକଲେ ନାହିଁ । ହାଇଦର୍ ନିଜର ଭଗିନୀପତି ମଖଦମ ସାହେବଙ୍କୁ ଏକ ହଜାର ଅଶ୍ୱାରୋହୀ ଏବଂ ଦୁଇ ହଜାର ପଦାତିକ ଦେଇ କାର୍ଯ୍ୟୋପଲକ୍ଷରେ ଡିଣ୍ଡିଗଲ୍ ପ୍ରେରଣ କଲେ । କିନ୍ତୁ ହରିସିଂହଙ୍କୁ ନିର୍ମୂଳ କରିବାର ଗୋପନ ଅଭିଳାଷ ଜାଗ୍ରତ ରହିଥିଲା । ଏଇଥର ହରିସିଂହଙ୍କର ପତନ ଘଟିଲା । ହରିସିଂହଙ୍କର ତିନିଶତ ଘୋଟକ, ଏକହଜାର ମସ୍କେଟ ବନ୍ଧୁକ ଏବଂ ତିନୋଟି ସାଧାରଣ ବନ୍ଧୁକ ରାଜଧାନୀକୁ ଆନୀତ ହୋଇଥିଲା । ତହିଁରୁ ତିନୋଟିମାତ୍ର ବନ୍ଧୁକ ଏବଂ ପନ୍ଦରଟି ଅଶ୍ୱ ମହୀଶୂର ରାଜାଙ୍କୁ ଉପହାର ଦେଇ ବାକୀ ସବୁ ହାଇଦର ଅଲ୍ଲି ନିଜେ ଆତ୍ମସାତ୍ କଲେ ।

ହାଇଦର ଅଲ୍ଲି ଯେତେବେଳେ ଡିଣ୍ଡିଗଲଠାରୁ ସତ୍ୟ-ମଙ୍ଗଳମ୍ ଯାଇଥିଲେ ସେତେବେଳେ ସେ ପଥ ମଧ୍ୟରେ ମାଲବାର ଆକ୍ରମଣ କରିଥିଲେ । ଏହି ଆକ୍ରମଣ ପାଇଁ ହାଇଦର ଅଲ୍ଲି ଖର୍ଚ୍ଚ ପାଇବେ ବୋଲି ଦେବରାଜ ଓ ହାଇଦରଙ୍କ ମଧ୍ୟରେ କଥା-ବାର୍ତ୍ତା ହୋଇଥିଲା । ନଞ୍ଜିରାଜ ମଧ୍ୟ ହାଇଦରଙ୍କର ଏହି ପ୍ରାପ୍ୟକୁ ସ୍ୱୀକାର କରିଥିଲେ । ସେଥିପାଇଁ ହାଇଦର ଅଲ୍ଲି କୋଇମ୍ବା-ଟୁରର ଦେଓ୍ୟାନୀ ପ୍ରଦତ୍ତ ହେଲେ । ଏହା ଛଡ଼ା ନିଜର ସୁକାର୍ଯ୍ୟ ପାଇଁ ସେ ବାଙ୍ଗାଲୋର ଦୁର୍ଗ ଓ ବାଙ୍ଗାଲୋର ଜିଲ୍ଲାକୁ ଜାଗିର ସ୍ୱରୂପ ଲାଭକଲେ ।

ହାଇଦର ଅଲ୍ଲିଙ୍କ ପୂର୍ବ ଆଦେଶ ମାନି ସେନାପତିମାନେ ମରହଟ୍ଟମାନଙ୍କୁ ମହୀଶୂର ସୀମା ମଧ୍ୟରୁ ବହିଷ୍କାର କରିଦେଲେ । ଏହି ସମୟରେ କୁଡ଼ାପ୍ପା ଓ ସାଭେନର ପ୍ରଭୃତିର ଶାସନକର୍ତ୍ତା-ମାନେ ପେଶବାଙ୍କ ବିରୁଦ୍ଧରେ ବିଦ୍ରୋହ କରିଥିଲେ । ୧୭୫୮

ଖ୍ରୀ:ଅ:ରେ ମରହଟ୍ଟାମାନେ ମହୀଶୂର ଅଭିଯାନରେ ଅଗ୍ରସର ହେଲେ । ସେମାନେ ଜାଣିଲେ ଯେ ହାଇଦର ଅଲ୍ଲିଙ୍କ ପ୍ରରୋଚନାରେ ପଡ଼ି ମହୀଶୂରର ସେନାପତିମାନେ ମରହଟ୍ଟାମାନଙ୍କ ପ୍ରତି ଏପରି ବ୍ୟବହାର କରୁଛନ୍ତି । ତେଣୁ ସେମାନେ ଚିଠି ଲେଖିଲେ, "ଆମେ ହାଇଦର ଅଲ୍ଲିଙ୍କୁ ବାଙ୍ଗାଲୋରରେ ପ୍ରବେଶ କରିବାକୁ ଛାଡ଼ିଦେଇ ଆକ୍ରମଣ ଆରମ୍ଭ କରିବୁ ଏବଂ ଦେଖିବା ଦେଖି, ହାଇଦର କେମିତି ଏ ଯୁଦ୍ଧରେ ଜିତିବେ !" ସେମାନେ ପ୍ରଥମେ ବାଙ୍ଗାଲୋର ଉପରେ ଆକ୍ରମଣ ଆରମ୍ଭ କଲେ । ବାଙ୍ଗାଲୋର ଅଧିକାର କରି ସେମାନେ ଚ୍ଛିନ୍ନାପାଟଣା ଅଧିକାର କଲେ । କିନ୍ତୁ ଏତିକିବେଳେ ମରହଟ୍ଟା ସୈନ୍ୟମାନଙ୍କ ମଧ୍ୟରେ ଖାଦ୍ୟାଭାବ ଘଟିଲା ।

ଏଣେ ଦରମା ପାଇ ନ ଥିବାରୁ ମହୀଶୂର ରାଜାଙ୍କ ସୈନ୍ୟମାନେ ଯୁଦ୍ଧକୁ ବାହାରିଲେ ନାହିଁ । ତେଣୁ ହାଇଦର ଅଲ୍ଲି ସେମାନଙ୍କୁ ଦରମା ଦେବାର ପ୍ରତିଶ୍ରୁତି ଦେଇ ଯୁଦ୍ଧକୁ ଯିବାପାଇଁ ପ୍ରବର୍ତ୍ତାଇଲେ । ରାଜଧାନୀକୁ ରକ୍ଷା କରିବା ପାଇଁ ସେ ମଦୁରା ଓ ମାଲ୍ଟେଭଲଠାରେ ଦୁଇ ଦଳ ସୁଶିକ୍ଷିତ ସୈନ୍ୟ ମହଯୁଦ୍ ରଖିଲେ । ମଦୁରାସ୍ଥ ସେନାପତି ଲତିଫ୍ ଅଲ୍ଲି ବେଗ୍ ଚ୍ଛିନ୍ନାପାଟ୍ନାକୁ ପୁନର୍ବାର ଅଧିକାର କରିନେଲେ । ଏତିକିବେଳେ ହାଇଦର ନିଜର ସୈନ୍ୟବଳ ଧରି ଗୋଟିଏ ପାର୍ବତ୍ୟ ଘାଟି ଜାଗା ଉପରେ ଜଗି ରହିଲେ । ସେଠାକୁ କୌଣସି ଅଶ୍ୱାରୋହୀ ପ୍ରବେଶ କରିବା ଅସମ୍ଭବ ଥିଲା । ଦିବାଭାଗରେ ହାଇଦର ନିର୍ଲିପ୍ତ ରହୁଥିଲେ ଏବଂ ରାତ୍ରରେ ମରହଟ୍ଟାମାନଙ୍କ ଉପରେ ନୈଶ ଆକ୍ରମଣ ଚଳାଉଥିଲେ । ବିଶେଷତଃ ନୈଶ ଆକ୍ରମଣରେ ହାଇଦର ଅଲ୍ଲି ପୂର୍ବରୁ ବଡ଼ ଅଭ୍ୟସ୍ତ ଥିଲେ । ଏହିପରି ଭାବରେ ଦୁଇ ମାସ

ହଡଗଲା । ଅବଶେଷରେ ମରହଟ୍ଟା ଓ ହାଇଦରଙ୍କ ମଧ୍ୟରେ ଚୁକ୍ତି ହେଲା । ମରହଟ୍ଟାମାନେ ବତିଶ ଲକ୍ଷ ଟଙ୍କା ପାଇଲେ ଅଧିକୃତ ଜିଲ୍ଲାଗୁଡ଼ିକ ଛାଡ଼ିଦେବେ ବୋଲି ପ୍ରତିଶ୍ରୁତି ଦେଲେ । ହାଇଦର-ଅଲ୍ଲି ବାଧ୍ୟତାମୂଳକ ଚାନ୍ଦାସ୍ୱରୂପ ଷୋହଳ ଲକ୍ଷ ଟଙ୍କା ଲୋକ-ମାନଙ୍କଠାରୁ ଅସୁଲ କରି ମରହଟ୍ଟାମାନଙ୍କୁ ଦେଲେ । ବାକି ଷୋହଳ ଲକ୍ଷ ଟଙ୍କା ପାଇଁ ସେ ଦେଶୀୟ ବ୍ୟାଙ୍କମାନଙ୍କଠାରୁ ଋଣ ଖୋଜିଲେ । ହାଇଦର ଅଲ୍ଲି ଦେଶରେ ଏତେଦୂର ବିଶ୍ୱାସଭାଜନ ହୋଇପଡ଼ିଥିଲେ ଯେ ବ୍ୟାଙ୍କଗୁଡ଼ିକ ତାଙ୍କୁ ଆଗ୍ରହର ସହିତ ଋଣ ଦେଲେ । ହାଇଦର ଅଲ୍ଲି ଏହିପରି ଭାବରେ ମରହଟ୍ଟାମାନଙ୍କୁ ସମସ୍ତ ଟଙ୍କା ଦେଇ ତେରଟିଯାକ ଜିଲ୍ଲାକୁ ନିଜର ବ୍ୟକ୍ତିଗତ ଅଧୀନତା ମଧ୍ୟକୁ ନେଇଆସିଥିଲେ । ହାଇଦର ଅଲ୍ଲି ଦେଶକୁ ସମ୍ମାନର ସହିତ ଶାନ୍ତି ଆଣି ପାରିଛନ୍ତି, ଏଥିପାଇଁ ତାଙ୍କ ଯଶ ଚାରିଆଡେ଼ ବ୍ୟାପିଗଲା । ତାଙ୍କ ସମ୍ମାନ ବହୁଗୁଣ ବଢ଼ିଗଲା ।

ଏହି ସମୟରେ ମହୀଶୂରର କେନ୍ଦ୍ର ଶାସନ ଭାଙ୍ଗି ପଡ଼ିଲା ପରି ଜଣାପଡ଼ୁଥାଏ । ସୈନ୍ୟମାନେ ଦରମା ନ ପାଇ ନଞ୍ଜିରାଜଙ୍କ ଫାଟକ ପାଖରେ ପୁଣି ଧାରଣା ଦେଇ ବସି ରହିଲେ । ସେମାନଙ୍କୁ ଏ ଦୁରବସ୍ଥାରୁ ମୁକ୍ତ କରିବା ପାଇଁ ସୈନ୍ୟମାନେ ହାଇଦର ଅଲ୍ଲିଙ୍କୁ ଅନୁରୋଧ କଲେ । ଅବଶେଷରେ ହାଇଦର ଅଲ୍ଲି ନଞ୍ଜିରାଜଙ୍କ ସମ୍ମୁଖକୁ ଯାଇ ଏ ସମସ୍ୟାର ତୁରନ୍ତ ସମାଧାନ କରିବା ପାଇଁ ଅନୁରୋଧ କଲେ । ନଞ୍ଜିରାଜ ନିଜର ପରିସ୍ଥିତି ବୁଝିପାରିଲେ । ତହୁଁ ସେ ବଡ଼ ବିକଳ ହୋଇ ସୈନ୍ୟମାନଙ୍କୁ କହିଲେ ଯେ ଦୁର୍ଭାଗ୍ୟବଶତଃ ସେ ଆଉ ଶାସନ କାର୍ଯ୍ୟ ଚଳାଇ ପାରିବେ ନାହିଁ । ସେଥିପାଇଁ ସେ ଇସ୍ତଫା ଦେଉଛନ୍ତି । ଏଣିକି ସୈନ୍ୟମାନେ ସେମାନଙ୍କର ଆପତ୍ତି ଅଭିଯୋଗ ରାଜାଙ୍କୁ ଜଣାନ୍ତୁ ।

ଏହାପରେ ହାଇଦର ସମସ୍ୟାର ସମାଧାନ ପାଇଁ ରାଜାଙ୍କ ସହିତ ସାକ୍ଷାତ କଲେ । ରାଜା ସରକାରୀ ସୈନ୍ୟମାନଙ୍କର ସମସ୍ତ ଖର୍ଚ୍ଚ ବହନ କରିବା ପାଇଁ ହାଇଦର ଅଲ୍ଲିଙ୍କୁ ଆଉ କେତେଗୁଡ଼ିଏ ଜିଲ୍ଲା ଦେଲେ । ଫଳରେ ହାଇଦର ଅଲ୍ଲି ମହୀଶୂରର ଅର୍ଦ୍ଧାଂଶରୁ ବେଶୀ ଦଖଲ କରି ବସିଲେ । ଏଣିକି ନଞ୍ଜରାଜଙ୍କୁ କ୍ଷମତାଚ୍ୟୁତ କରିବାର ମନ୍ତ୍ରଣା ଚାଲିଲା । ହାଇଦର ଅଲ୍ଲି ଓ ଖାଣ୍ଡେରାଓଙ୍କ ପରାମର୍ଶରେ ରାଜା ଏକ ଲକ୍ଷ ପାଗୋଡ଼ା ଆୟ ହେଉଥିବା ଖଣ୍ଡିଏ ଜମିଦାରୀ ନଞ୍ଜରାଜଙ୍କୁ ଦେଲେ । ତାଙ୍କୁ ମହୀଶୂର ତ୍ୟାଗ କରିବା ପାଇଁ ବାଧ୍ୟ କରାଗଲା । ସେ ବାଧ୍ୟ ହୋଇ କୁନୁରଠାରେ ରହିଲେ । ନଞ୍ଜରାଜାଙ୍କଠାରୁ ଛଡ଼େଇ ନିଆଯାଇଥିବା ଜିଲ୍ଲାଗୁଡ଼ିକ ହାଇଦରଙ୍କୁ ଦିଆଗଲା । କିନ୍ତୁ ହାଇଦର-ଅଲ୍ଲି ଖର୍ଚ୍ଚବୃଦ୍ଧିର କାରଣ ଦର୍ଶାଇ ଅସନ୍ତୋଷ ପ୍ରକାଶ କରିବାରୁ ରାଜାସାହେବ ତାଙ୍କୁ ଆହୁରି ଚାରିଗୋଟି ଜିଲ୍ଲା ଦେଇଥିଲେ । ମାତ୍ର ଖାଣ୍ଡେରାଓ ଏହାର ତୀବ୍ର ପ୍ରତିବାଦ କରିଥିଲେ ।

ଏହାପରେ ହାଇଦର ଅଲ୍ଲିଙ୍କର କ୍ଷମତା ଓ ପ୍ରଭାବ ବହୁପରିମାଣରେ ବଢ଼ି ଯାଇଥିଲା । ସେ ନିଜର କୌଶଳ ଓ ଯୋଜନା ବଳରେ ଶୀଘ୍ର ଉଚ୍ଚକୁ ଉଠିଗଲେ । ନିଜର ଉଚ୍ଚାଭିଳାଷ ପୂରଣ କରିବାପାଇଁ, ନିଜର ଶ୍ରେଷ୍ଠ ଶ୍ରେଷ୍ଠ ଭାବପ୍ରବଣତାକୁ ଚାପି ଦେବାପାଇଁ ତାଙ୍କର ଯଥେଷ୍ଟ ଧୈର୍ଯ୍ୟ ଓ କ୍ଷମତା ଥିଲା । ଲକ୍ଷ୍ୟ-ସ୍ଥଳରେ ପହଞ୍ଚିବା ପାଇଁ ଯେତେବେଳେ ଯେଉଁ ପନ୍ଥା ଅବଲମ୍ବନ କରିବା ଆବଶ୍ୟକ ହେଉଥିଲା, ତାହା ସେ ନିର୍ବିକାର ଚିତ୍ତରେ କରିଯାଉଥିଲେ । ଶେଷରେ ଡିଣ୍ଡିଗଲର ଫୌଜଦାର ମହୀଶୂରର ଅର୍ଦ୍ଧକରୁ ଊର୍ଦ୍ଧ୍ୱ ଅଂଶର ଅଧିକାରୀ ହୋଇବସିଲେ ।



# ଷଡ଼ଯନ୍ତ୍ରର ସମାଧି

ହାଇଦର୍ ଅଲ୍ଲି କ୍ଷମତାଶାଳୀ ହୋଇ ଉଠିବାରୁ ତାଙ୍କୁ ତଳାତଳାନ୍ତ କରିଦେବା ପାଇଁ ଏକ ବିରାଟ ଷଡ଼ଯନ୍ତ୍ରର ଆୟୋଜନ ହୋଇଥିଲା । ଏଥିରେ ମହୀଶୂରର ରାଜା ସଂପୃକ୍ତ ରହିଥିଲେ । କାରଣ ସେ ବୁଝିପାରିଥିଲେ ଯେ ନଞ୍ଜରାଜଙ୍କ ପ୍ରଭାବରୁ ମୁକ୍ତ ହୋଇ ହାଇଦର ଅଲ୍ଲିଙ୍କ ବାହୁଗ୍ରସ୍ତ ହେଲେ ରହିବା ମହାରଗରୁ ଆସି କାନ୍ତାରରେ ପଡ଼ିବା ସଙ୍ଗେ ସମାନ । ଏହି ଷଡ଼ଯନ୍ତ୍ରରେ ମରହଟ୍ଟା ସର୍ଦ୍ଦାର ବିଶ୍ୱ ପଣ୍ଡିତଙ୍କର ସହଯୋଗ ମଧ୍ୟ ନିଆଯାଇଥିଲା । ଷଡ଼ଯନ୍ତ୍ରକାରୀମାନେ ଏଥିପାଇଁ ହାଇଦରଙ୍କ ଦେଓ୍ୱାନ୍ ଖାଣ୍ଡେ-ରାଓଙ୍କୁ ମଧ୍ୟ ପ୍ରବର୍ତ୍ତାଇଥିଲେ ।

ଖାଣ୍ଡେରାଓ ପ୍ରଥମେ ହାଇଦର ଅଲ୍ଲିଙ୍କର ଦେଓ୍ୱାନ୍‌ରୂପେ ଜୀବନ ଆରମ୍ଭ କରିଥିଲେ । ହାଇଦର ଅଲ୍ଲିଙ୍କ ସୌଭାଗ୍ୟର କେତେକାଂଶ ଖାଣ୍ଡେରାଓଙ୍କଦ୍ୱାରା ଗଠିତ ହୋଇଥିଲା । ହାଇଦରଙ୍କ ସୈନ୍ୟବାହିନୀ ଗଠନରେ ଖାଣ୍ଡେରାଓଙ୍କର ହାତ ରହିଥିଲା । ହାଇଦର ଡିଣ୍ଡିଗଲରେ ଥିବା ସମୟରେ ଖାଣ୍ଡେରାଓ ଶ୍ରୀରଙ୍ଗପତ୍ତନଠାରେ ଥାଇ ହାଇଦରଅଲ୍ଲିଙ୍କୁ ବହୁ ସାହାଯ୍ୟ କରିଥିଲେ । ସେତେବେଳେ ସେ ରାଜପରିବାର ଓ ହାଇଦର

ଅଲ୍ଲିଙ୍କ ମଧ୍ୟରେ ଯୋଗସୂତ୍ରରୂପେ ରହିଥିଲେ । ନଞ୍ଜାରାଜଙ୍କୁ ତଡ଼ି ହାଇଦରଙ୍କୁ ପ୍ରତିଷ୍ଠା କରିବାରେ ତାଙ୍କର କୌଶଳ ଓ ଚେଷ୍ଟା ଯଥେଷ୍ଟ କାର୍ଯ୍ୟ କରିଥିଲା । ତେଣୁ ଖାଣ୍ଡେରାଓ ମହୀଶୂରର ଦେୱାନ ପଦରେ ଅଧିଷ୍ଠିତ ହୋଇ ପାରିଥିଲେ । ତାହା ସଙ୍ଗେ ସଙ୍ଗେ ସେ ହାଇଦରଙ୍କ ଅଧିକୃତ ଅଞ୍ଚଳ ପାଇଁ ହାଇଦର ଅଲ୍ଲିଙ୍କ ଦେୱାନରୂପେ ମଧ୍ୟ କାର୍ଯ୍ୟ କରୁଥିଲେ । ଖାଣ୍ଡେରାଓ ଏହିସବୁ କ୍ଷମତା ବଳରେ ସମଗ୍ର ମହୀଶୂରର ରାଜସ୍ୱ ବିଭାଗକୁ ପୂର୍ଣ୍ଣଭାବରେ ନିୟନ୍ତ୍ରଣ କରି ବସିଲେ । ହାଇଦର ଅଲ୍ଲି ବିଭିନ୍ନ କାରଣ ଦର୍ଶାଇ ରାଜସରକାରଠାରେ ବେଶୀ ବେଶୀ ଟଙ୍କା ଦାବି କରି ବସିବାରୁ ଖାଣ୍ଡେରାଓ ବଡ଼ ବିରକ୍ତ ହୋଇ ଉଠିଲେ । ସେ ମଧ୍ୟ ହାଇଦର୍‌ଙ୍କର ରାଜ୍ୟଲୋଲୁପ ନୀତିକୁ ଆଦୌ ପସନ୍ଦ କରି ନ ଥିଲେ ଏବଂ ପ୍ରକାଶ୍ୟରେ ତା'ର ପ୍ରତିବାଦ କରିଥିଲେ । ତେଣୁ ସେ ହାଇଦର ଅଲ୍ଲିଙ୍କ ବିରୁଦ୍ଧରେ ଏହି ଷଡ଼ଯନ୍ତ୍ରରେ ପୂର୍ଣ୍ଣ-ପ୍ରାଣରେ ଯୋଗଦାନ କଲେ ।

ଷଡ଼ଯନ୍ତ୍ରକାରୀମାନେ ସୈନ୍ୟସାମନ୍ତ ନେଇ ହାଇଦର ଅଲ୍ଲିଙ୍କୁ ଆକ୍ରମଣ କରିବାକୁ ବସିଲେ । ସେତେବେଳକୁ ହାଇଦରଙ୍କ ନିକଟରେ ଯଥେଷ୍ଟ ସୈନ୍ୟ ନ ଥାନ୍ତି । କାରଣ ତାଙ୍କର ଅଧିକାଂଶ ସୈନ୍ୟ ଫରାସୀମାନଙ୍କୁ ସାହାଯ୍ୟ କରିବା ପାଇଁ ମଖଦମ ଅଲ୍ଲିଙ୍କ ନେତୃତ୍ୱରେ ଯାତ୍ରା କରିଥାନ୍ତି । ଇସ୍‌ମାଇଲ ସାହେବ ଓ ପେକ୍‌ସୋଟେ (Peixoto) ମଧ୍ୟ ଆର୍କଟ ଅଭିଯାନ ଲକ୍ଷ୍ୟରେ ଆନକଲ୍‌ଠାରେ ଡେରା ପକାଇ ରହିଥାନ୍ତି ।

ତା ୧୨-୭-୧୭୬୦ରେ ଷଡ଼ଯନ୍ତ୍ରକାରୀମାନଙ୍କ ପକ୍ଷରୁ ଦୌଲତ୍‌-ବାଗ୍‌ଠାରେ ହାଇଦରଙ୍କ ଉପରେ ଆକ୍ରମଣ ହେଲା । ଏହି ଆକ୍ରମଣରେ

ଖାଦେରାଓ ନେତୃତ୍ୱ ନେଇଥାନ୍ତି । ହାଇଦର ନିଜର ପରିବାର-ବର୍ଗଙ୍କୁ ଛାଡ଼ି ଦେଇ ୨୦୦।୩୦୦ ଅଶ୍ୱାରୋହୀ ଏବଂ ସୁନାବସ୍ତାଗୁଡ଼ିକ ନେଇ ନିରାପଦ ସ୍ଥାନକୁ ପଳାଇଗଲେ । ଏହି ସମୟରେ ବିଶାଦ ପଣ୍ଡିତ ଦଶ ହଜାର ସୈନ୍ୟ ନେଇ ଯୁଦ୍ଧରେ ଆସି ଯୋଗ ଦେଇଥିଲେ । ହାଇଦର ନିଜର ପରିବାରବର୍ଗଙ୍କୁ ନିଶ୍ଚିନ୍ତରେ ଛାଡ଼ି ଚାଲିଯାଇ-ଥିଲେ । କାରଣ ସେ ଖାଦେରାଓଙ୍କ ପ୍ରକୃତି ଓ ମନୋବୃତ୍ତି ଭଲ-ରୂପେ ଜାଣିଥିଲେ । ସୁତରାଂ ହାଇଦରଙ୍କ ପରିବାର କୌଣସି-ମତେ ଅତ୍ୟାଚାରିତ ହେବେ ନାହିଁ ବୋଲି ହାଇଦରଙ୍କର ବିଶ୍ୱାସ ଥିଲା ।

ହାଇଦର ଅଲ୍ଲି ଆନିକଲ ଯାଇ ଇସ୍‌ମାଇଲ୍ ସାହେବଙ୍କ ସହିତ ପରାମର୍ଶ କଲେ । ତତ୍ପରେ ହାଇଦର ସୈନ୍ୟବାହିନୀ ଧରି ବାଙ୍ଗାଲୋର ଅଭିମୁଖେ ଯାତ୍ରା କଲେ । ବାଙ୍ଗାଲୋର, ଆନିକଲ୍, ଡିଣ୍ଡିଗଲ ଓ ବରମହଲ ଛଡ଼ା ହାଇଦରଙ୍କ ହସ୍ତରେ ଆଉ କିଛି ରହିଲା ନାହିଁ । ମଖଦମ୍‌ଅଲ୍ଲି ନ ଫେରିବା ପର୍ଯ୍ୟନ୍ତ ହାଇଦର ଅନ୍ୟ ଉପାୟ କିଛି ଦେଖିଲେ ନାହିଁ । ହାଇଦର ଏତିକି-ବେଳେ ବାଙ୍ଗାଲୋରର ବଣିକମାନଙ୍କଠାରୁ ଚାରି ଲକ୍ଷ ଟଙ୍କା କରଜ ଆଣିଥିଲେ । ଅବଶ୍ୟ ପରେ ସେ ଏସବୁ ପରିଶୋଧ କରିଦେଇଥିଲେ । ଏହି ସମୟରେ ମଖଦମ୍‌ଅଲ୍ଲି ଫେରିଲେ । କିନ୍ତୁ ଫେରନ୍ତା ପଥରେ ସେ ମରହଟ୍ଟାମାନଙ୍କ ଘେରାଉ ଭିତରେ ପଡ଼ିଗଲେ । ତାଙ୍କୁ ରକ୍ଷା କରିବା ପାଇଁ ହାଇଦର ଆଉ ଏକ ସୈନ୍ୟବାହିନୀ ପ୍ରେରଣ କଲେ । କିନ୍ତୁ ଏହା ସମ୍ପୂର୍ଣ୍ଣରୂପେ ପରାସ୍ତ ହୋଇଥିଲା । ହାଇଦରଙ୍କ ପତନ ଏହିଥର ଅବଶ୍ୟମ୍ଭାବୀ ପରି ପ୍ରତୀୟମାନ ହେଲା । କିନ୍ତୁ ଏତିକିବେଳେ ହାଇଦରଙ୍କ ପ୍ରତି ଭାଗ୍ୟଲକ୍ଷ୍ମୀ ପ୍ରସନ୍ନ ହେଲେ । ଉତ୍ତର-ଭାରତରେ

ମରହଟ୍ଟାମାନେ ସଙ୍କଟାପନ୍ନ ହୋଇପଡ଼ିବାରୁ ସେମାନେ ହାଇଦରଙ୍କ ସହିତ ଅଧିକ ଦିନ ଯୁଦ୍ଧରେ ବ୍ୟାପୃତ ରହିବାକୁ ନିରାପଦ ମନେକଲେ ନାହିଁ । ପାଞ୍ଚଲକ୍ଷ ଟଙ୍କା ଏବଂ ବରମହଲ୍ ଜିଲ୍ଲା ପାଇଲେ ସନ୍ତୁଷ୍ଟ ହୋଇ ଫେରିଯିବେ ବୋଲି ବିଶେଷ ପଣ୍ଡିତ ହାଇଦର୍‌ଙ୍କ ନିକଟକୁ ସମ୍ବାଦ ଦେଲେ । ସେହି ଅନୁସାରେ ମରହଟ୍ଟାମାନେ ଫେରିଗଲେ । କିନ୍ତୁ ପରେ ତୃତୀୟ ପାନିପଥ ଯୁଦ୍ଧରେ ମରହଟ୍ଟାମାନେ ପରାସ୍ତ ହୋଇଥିବାର ସମ୍ବାଦ ପାଇ ହାଇଦର୍ ଅଲ୍ଲି ବରମହଲ୍ ଜିଲ୍ଲା ଛାଡ଼ିଲେ ନାହିଁ ।

ମରହଟ୍ଟାମାନଙ୍କଠାରୁ ନିରାଶ ହୋଇ ମହୀଶୂରର ରାଜା ଇଂରେଜମାନଙ୍କର ସାହାଯ୍ୟ ଲୋଡ଼ିଲେ । କିନ୍ତୁ ଇଂଲଣ୍ଡରେ ଥିବା ବୋର୍ଡ ଅଫ୍ ଡାଇରେକ୍‌ଟର୍‌ସ ଏଥିରେ ରାଜି ନ ହେବାରୁ ମହୀଶୂର ରାଜା ନିରୁପାୟ ହୋଇ ଖାଣ୍ଡେରାଓଙ୍କ ଉପରେ ପୂର୍ଣ୍ଣଭାବରେ ନିର୍ଭର କଲେ । ମରହଟ୍ଟାମାନଙ୍କୁ ନିରାକରଣ କରି ହାଇଦର ଖାଣ୍ଡେରାଓଙ୍କ ସମ୍ମୁଖୀନ ହେଲେ । ସେ ଖାଣ୍ଡେରାଓଙ୍କ ପ୍ରତିନିଧିମାନଙ୍କଠାରୁ ସାଲେମ୍ ଓ କୋଇମ୍ବାଟୁରକୁ ରକ୍ଷା କରିବାପାଇଁ ସେଠାକୁ ସୈନ୍ୟଦଳ ପ୍ରେରଣ କଲେ ଏବଂ ନିଜେ କିଛି ସୈନ୍ୟ ଧରି ସୋସିଲଠାରେ କାବେରୀ ଅତିକ୍ରମ କଲେ । କିନ୍ତୁ ଏହି ଯୁଦ୍ଧରେ ଖାଣ୍ଡେରାଓ ହାଇଦର୍ ଅଲ୍ଲିଙ୍କୁ ପରାସ୍ତ କଲେ । ହାଇଦର୍‌ଙ୍କର ବହୁତ କ୍ଷତି ଘଟିଲା ।

ଅନ୍ୟ ଉପାୟ ନ ପାଇ ହାଇଦର ନଞ୍ଜରାଜଙ୍କ ସମ୍ମୁଖରେ ଉପସ୍ଥିତ ହେଲେ । ହାଇଦର ଅଲ୍ଲିଙ୍କ ଉନ୍ନତି ପଥରେ ନଞ୍ଜରାଜଙ୍କର ଦାନ କିଛି କମ୍ ନୁହେଁ । କିନ୍ତୁ ସେହି ହାଇଦର୍‌ଙ୍କ

ପରାମର୍ଶ ଓ ଭରସାରେ ମହୀଶୂରର ରାଜା ନଞ୍ଜରାଜଙ୍କୁ ଏ ଦୁର୍ଗଟିକୁ ନିକ୍ଷେପ କରିଥିଲେ ।

ଯାହାହେଉ, ହାଇଦର୍ ନଞ୍ଜରାଜଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ନିଜେ ବଡ଼ ଅନୁତପ୍ତ ବୋଲି ପ୍ରକାଶ କଲେ । ସେ କହିଲେ ଯେ ନଞ୍ଜରାଜଙ୍କଠାରେ ଅକୃତଜ୍ଞ ହୋଇଥିବାରୁ ତାଙ୍କର ଏହି ଦୁର୍ଗତି । ଶେଷକୁ ଉଭୟଙ୍କ ମଧ୍ୟରେ ଏହି ପ୍ରସ୍ତାବ ହେଲା ଯେ ନଞ୍ଜରାଜ ମହୀଶୂରର ସର୍ବାଧିକାରୀ ହେବେ ଏବଂ ହାଇଦର୍ ଅଲ୍ଲି ଦଳଓ୍ୱାଇରୂପେ କାର୍ଯ୍ୟ କରିବେ । ହାଇଦର ଅଲ୍ଲି ଓ ନଞ୍ଜରାଜଙ୍କର ମିଳିତବାହିନୀ ରାଜଧାନୀ ଅଭିମୁଖେ ଅଭିଯାନ କରି ଖାଣ୍ଡେରାଓଙ୍କ ନେତୃତ୍ୱରେ ଆସୁଥିବା ରାଜପକ୍ଷୀୟ ସୈନ୍ୟମାନଙ୍କର ସମ୍ମୁଖୀନ ହେଲେ । କିନ୍ତୁ ଏ ଯୁଦ୍ଧରେ ମଧ୍ୟ ହାଇଦର ବିଜୟର କୌଣସି ଆଶା ଦେଖିଲେ ନାହିଁ । ତହୁଁ ସେ ଗୋଟିଏ କୌଶଳ ଅବଲମ୍ବନ କଲେ । ଖାଣ୍ଡେରାଓଙ୍କ ସୈନ୍ୟବାହିନୀରେ ଅଧିକାଂଶ ବିଭିନ୍ନ ଦେଶରୁ ପଳାଇ ଆସିଥିବା ସୈନ୍ୟ ରହିଥିଲେ । ତେଣୁ ସେମାନଙ୍କର ପ୍ରଭୁଭକ୍ତି ଉପରେ ଖାଣ୍ଡେରାଓଙ୍କର ପୂର୍ଣ୍ଣ ବିଶ୍ୱାସ ନ ଥିଲା । ଏହାରି ସୁଯୋଗ ନେଇ ହାଇଦର ଉତ୍ତର ଦେଲାଭଳି କେତୋଟି ଚିଠି ଖାଣ୍ଡେରାଓଙ୍କର କେତୋଟି ଅଫିସରଙ୍କ ନିକଟକୁ ବାହକଦ୍ୱାରା ପ୍ରେରଣ କଲେ । ପତ୍ରବାହକ ଜାଣିଶୁଣି ଉଦ୍ଦେଶ୍ୟର ସହିତ ଶତ୍ରୁହସ୍ତରେ ଧରାଦେଲା । ସେ ଚିଠିରେ ଲେଖାଥିଲା ଯେ ଖାଣ୍ଡେରାଓଙ୍କୁ ହତ୍ୟା କଲେ ସେହି ଅଫିସରମାନେ ହାଇଦରଙ୍କଠାରୁ ପୁରସ୍କାର ପାଇବେ । ଏଥିରେ ଖାଣ୍ଡେରାଓ ଭୟ ପାଇ ଗୋପନରେ ଶ୍ରୀରଙ୍ଗପତ୍ତନ ପଳାଇଗଲେ ।

ତତ୍ପରେ ହାଇଦର ଖାନ୍ଦେରାଓଙ୍କ ସୈନ୍ୟମାନଙ୍କୁ ଧ୍ୱସ୍ତ କରି ସେମାନଙ୍କର ସମସ୍ତ ସରଞ୍ଜାମ ଆତ୍ମସାତ୍ କଲେ । ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କୁ ନିଜର ସୈନ୍ୟ ଶ୍ରେଣୀଭୁକ୍ତ କଲେ । ତତ୍ପରେ ସେ ଏନେଗାଡ଼, ଶଙ୍କରିଦୁର୍ଗ, ପିଲ୍ନି ଓ ଧର୍ମପୁରମକୁ ଖାନ୍ଦେରାଓଙ୍କ କର୍ତ୍ତୃତ୍ୱରୁ ମୁକ୍ତ କରି ମହୀଶୂର ଯାତ୍ରା କଲେ । ଏହିଠାରେ ଖାନ୍ଦେରାଓଙ୍କ ଷଡ଼ଯନ୍ତ୍ରର ସମାଧି ଘଟିଲା ।



# ସର୍ବେସର୍ବା ହାଇଦର

ଖାଣ୍ଡେରାଓ ପୂର୍ବରୁ ଶ୍ରୀରଙ୍ଗପତ୍ତନ ପଳାଇ ଯାଇଥିଲେ । ସେ ହାଇଦର୍ ଅଲ୍ଲିଙ୍କ ସହିତ ପୁଣି ଥରେ ଯୁଦ୍ଧ କରିବା ପାଇଁ ଶ୍ରୀରଙ୍ଗପତ୍ତନଠାରେ ସଜବାଜ ହେଲେ । କିନ୍ତୁ ଏତିକବେଳେ ଖାଣ୍ଡେରାଓଙ୍କର ଦୁର୍ଭାଗ୍ୟ ଉପସ୍ଥିତ ହେଲା । ରାଜାଙ୍କର ସଭାସଦ୍‌ମାନେ ଖାଣ୍ଡେରାଓଙ୍କୁ ତ୍ୟାଗ କରି ରାଜା ଓ ହାଇଦରଙ୍କ ମଧ୍ୟରେ ସମାଧାନ କରି ସଦ୍‌ଭାବ ପ୍ରତିଷ୍ଠା କରିବା ପାଇଁ ଚେଷ୍ଟାକଲେ । କଥିତ ଅଛି, ହାଇଦର ଅଲ୍ଲି ରାଜବାଟୀର ସ୍ତ୍ରୀଲୋକମାନଙ୍କୁ ଉପୂଖାତ କରିବା ପାଇଁ ବନ୍ଧୁକ ଫୁଟାଇଲେ । ଦୈବାତ୍ ଗୋଟିଏ ଗୁଳି ରାଜପୁରସ୍ଥ ଜଣେ ସ୍ତ୍ରୀଲୋକ ଦେହରେ ବାଜିବାରୁ ସବୁ ସ୍ତ୍ରୀଲୋକ ଜୋର୍‌ରେ କରୁଣ କଣ୍ଠରେ କାନ୍ଦି କାନ୍ଦି ରାଜାଙ୍କ ନିକଟରେ ସମବେତ ହେଲେ । ସେ କରୁଣ କ୍ରନ୍ଦନ ରୋଳରେ ରାଜବାଟୀ ଫାଟିପଡ଼ିଲା । ରାଜାଙ୍କର ହୃଦୟ ଏଥିରେ ବିଗଳିତ ହୋଇ ପଡ଼ିବାରୁ ସେ ଅନ୍ୟ ଉପାୟ ନ ଦେଖି ସମାଧାନ ପାଇଁ ହାଇଦରଙ୍କ ନିକଟକୁ ଦୂତ ପ୍ରେରଣ କଲେ । ହାଇଦର ଦାବି କଲେ ଯେ ରାଜାସାହେବ ସମ୍ପୂର୍ଣ୍ଣ ଭାବରେ ବିନାସର୍ତ୍ତରେ ଆତ୍ମ-

ସମର୍ପଣ କରନ୍ତୁ । ରାଜାସାହେବ ଖାନ୍ଦେରାଓଙ୍କୁ ହାଇଦରଙ୍କ ହସ୍ତରେ ସମର୍ପଣ କରନ୍ତୁ । କେବଳ ତିନି ଲକ୍ଷ ଟଙ୍କା ଉତ୍ପାଦନ କରୁଥିବା ଅଞ୍ଚଳ ରାଜାଙ୍କ ପାଇଁ ନିର୍ଦ୍ଦିଷ୍ଟ ରହୁ ଏବଂ କେବଳ ଏକ ଲକ୍ଷ ଟଙ୍କା ଉତ୍ପାଦନ କରୁଥିବା ଅଞ୍ଚଳ ନଞ୍ଜିରାଜାଙ୍କ ପାଇଁ ନିର୍ଦ୍ଦିଷ୍ଟ ରହୁ । ବାକି ସମସ୍ତ ରାଜ୍ୟ ପରିଚାଳନା ପାଇଁ ହାଇଦର ଅଲ୍ଲିଙ୍କ ହସ୍ତରେ ଛାଡ଼ି ଦିଆଯାଉ ।

ତାହାହିଁ ହେଲା । ମହୀଶୂରର ରାଜା ସମସ୍ତ କ୍ଷମତାରୁ ବଞ୍ଚିତ ହେଲେ ଏବଂ ହାଇଦର ଅଲ୍ଲି ମହୀଶୂରର ସର୍ବେସର୍ବା ହେଲେ । ସେ ହେଲେ ମହୀଶୂରର ମୁକୁଟହୀନ ସମ୍ରାଟ ।

ତତ୍ପରେ ହାଇଦର ଅଲ୍ଲି ଖାନ୍ଦେରାଓଙ୍କୁ ଗୋଟିଏ ଲୌହ ପିଞ୍ଜରାରେ ଆବଦ୍ଧ କରି ବାଙ୍ଗାଲୋରକୁ ପଠେଇଦେଲେ । ସେଠାରେ ବର୍ଷାଧିକକାଳ ଜୀବିତ ରହି ଖାନ୍ଦେରାଓ ଇହଲୀଳା ସାଙ୍ଗ କଲେ ।

କେତେକ ମତ ପୋଷଣ କରିଛନ୍ତି ଯେ କୃତଘ୍ନ ଖାନ୍ଦେରାଓଙ୍କ ମୃତ୍ୟୁପରେ ଗୋଟିଏ ଅଶୁଭ କାକର ମୃତ୍ୟୁ ଘଟିତ ବୋଲି କୁହାଯାଇ-ପାରେ । ଏ ସମ୍ପର୍କରେ ଗୋଟିଏ ଘଟଣା ଶୁଣିବାକୁ ମିଳେ । ଦିନେ ହାଇଦର୍ ଅଲ୍ଲି ଓ ମୁସିନ୍ ଖାଁ ଏକାଠି ବସିଥିଲେ । ହାଇଦର୍ ଅଲ୍ଲି କହିଲେ, "ଖାନ୍ଦେରାଓ ଜଣେ ବଡ଼ ନିମକ୍‌ହାରାମ୍ ।" ଏହା କହି ସେ ତୀକ୍ଷ୍ମ ଦୃଷ୍ଟିରେ ମୁସିନ୍ ଖାଁଙ୍କ ମୁହଁକୁ ଚାହିଁଲେ । ତହୁଁ ମୁସିନ୍ ଖାଁ କହିଲେ, "ଆପଣ ମୋ ମୁହଁକୁ କାହିଁକି ଚାହୁଁଛନ୍ତି ? ଏ ବିଷୟରେ ବରଂ ନଞ୍ଜିରାଜଙ୍କ ସହିତ ଆଲୋଚନା କରନ୍ତୁ ।" ପ୍ରକୃତରେ ହାଇଦରଙ୍କ ପ୍ରତି ଖାନ୍ଦେରାଓଙ୍କ କୃତଘ୍ନତା,

ନଞ୍ଜରାଜଙ୍କ ପ୍ରତି ହାଇଦର୍‌ଙ୍କ କୃତଘ୍ନତା ସଙ୍ଗେ ସମାନ । ପ୍ରଭେଦ ହେଉଛି, ହାଇଦର ଅଳ୍ପି ସଫଳ ହୋଇଚନ୍ତି, ମାତ୍ର ଖାଣ୍ଡେରାଓ ବିଫଳ ହୋଇଚନ୍ତି ।

ଖାଣ୍ଡେରାଓ ପ୍ରକୃତରେ ଜଣେ ସୁଦକ୍ଷ ଶାସକ, ସୁଦକ୍ଷ ଅର୍ଥମନ୍ତ୍ରୀଙ୍କ ଏବଂ ସୁଦକ୍ଷ ସେନାପତି ଥିଲେ ।



# ବିଜୟଶ୍ରୀର ଜୟଯାତ୍ରା

ଆଡ଼ୋନୀର ନବାବ ବସଲତ୍‌ଜଙ୍ଗ ସିରା ଓ ହସକୋଟକୁ ନିଜ ରାଜ୍ୟ ସହିତ ସାମିଲ କରିବାକୁ ଚେଷ୍ଟା କରୁଥିଲେ । ସେ ସିରା ଆକ୍ରମଣ କଲେ । କିନ୍ତୁ ସିରାଠାରେ ଅକୃତକାର୍ଯ୍ୟ ହୋଇ ହସ୍‌କୋଟ ଅବରୋଧ କଲେ । ସେଠାରେ ମଧ୍ୟ ସେ ସଫଳ ହେଲେ ନାହିଁ । ହସ୍‌କୋଟଠାରୁ ବାଙ୍ଗାଲୋର ମାତ୍ର ଅଠର ମାଇଲ ଦୂର । ହସ୍‌କୋଟଠାରେ ବସଲତ୍‌ଙ୍କର ଦୁରବସ୍ଥା ଦେଖି ତିନି ଲକ୍ଷ ଟଙ୍କା ବିନିମୟରେ ହାଇଦରଙ୍କୁ ସିରାର ନବାବ ବୋଲି ଘୋଷଣା କରିବାପାଇଁ ବସଲତଙ୍କ ନିକଟକୁ ହାଇଦର ଅଲି ଫୈଜୁଲ୍ଲାଙ୍କ ହସ୍ତରେ ପ୍ରସ୍ତାବ ପଠାଇଲେ । ସିରା ଉପରେ ବସ୍‌ଲତଙ୍କର ଅଧିକାର ଅଛି କି ନାହିଁ ସେ ବିଷୟ ଜାଣିବାପାଇଁ ହାଇଦର୍ ବ୍ୟସ୍ତ ନ ଥିଲେ । ସେ କେବଳ ଚାହୁଁ ଥିଲେ ଯେ ବସ୍‌ଲତ୍‌ଜଙ୍ଗ ତାଙ୍କୁ ସିରାର ନବାବ ବୋଲି ଘୋଷଣା କରନ୍ତୁ । ତାହା ହିଁ ହେଲା । ୧୭୬୧ ଖ୍ରୀ:ଅ: ରେ ହାଇଦର୍ ଅଲି ଫଉଜ ନେଇ ହସ୍‌କୋଟଠାରେ ପହଞ୍ଚିଲେ ଏବଂ ସେଠାରେ ବସ୍‌ଲତଙ୍କୁ ସମ୍ମାନ ଦେଖାଇଲେ । ହସ୍‌କୋଟ ସଙ୍ଗେ ସଙ୍ଗେ ହାଇଦର୍‌ଙ୍କ ଦଖଲକୁ ଆସିଲା । ତତ୍ପରେ

ହାଇଦର୍ ହୋଦ୍‌ବଳପୁର ଯାତ୍ରା କଲେ । ସେଠାରେ ଆବାସ୍ କୁଲ ଖାଁ ବାସ କରୁଥିଲେ । ଏହି ଆବାସ୍ କୁଲ ଖାଁ ହାଇଦରଙ୍କୁ ବାଲ୍ୟାବସ୍ଥାରେ ବହୁ ଯନ୍ତ୍ରଣା ଦେଇ ବନ୍ଦୀ କରିଥିଲେ । ହାଇଦରଙ୍କ ହୃଦୟରେ ପ୍ରତିହିଂସା ବହ୍ନି ଜଳିଉଠିଲା । କିନ୍ତୁ ହାଇଦରଙ୍କର ଆଗମନ ସମ୍ବାଦ ପାଇବା ପୂର୍ବରୁ ଆବାସ କୁଲ ଖାଁ ଅର୍କଟକୁ ପଳାୟନ କରିଥିଲେ ।

ତତ୍ପରେ ହାଇଦର ଓ ବସାଲତଙ୍କର ମିଳିତ ସେନା ସିରାକୁ ଅଭିଯାନ କରିଥିଲା । କର୍ଣ୍ଣାଟ ଅଭିଯାନ ପାଇଁ ମରହଟ୍ଟା-ମାନଙ୍କର ଯେଉଁସବୁ ଅସ୍ତ୍ରଶସ୍ତ୍ର ଓ ଅନ୍ୟାନ୍ୟ ଯୁଦ୍ଧ ସରଞ୍ଜାମ ଯୋଗାଡ଼ ହୋଇଥିଲା ସେ ସବୁ ସିରା ଦୁର୍ଗରେ ମହଜୁଦ୍ ହୋଇ ରହିଥିଲା । ପୂର୍ବରୁ ବସାଲତ ଓ ହାଇଦର୍‌ଙ୍କ ମଧ୍ୟରେ ଚୁକ୍ତି ହୋଇଥିଲା ଯେ ହାଇଦର୍ ଯାହା କିଛି ଯୁଦ୍ଧ ସରଞ୍ଜାମ ଓ ଅସ୍ତ୍ର-ଶସ୍ତ୍ର ସିରାରୁ ପାଇବେ ସେ ସବୁ ବସାଲତଙ୍କୁ ଦେଇଦେବେ ଏବଂ ହାଇଦର କେବଳ ସିରାର ନବାବ ହେବେ । କିନ୍ତୁ ହାଇଦର ଅଳ୍ପି ସିରାଦୁର୍ଗରୁ ପ୍ରାପ୍ତ ସମସ୍ତ ମୂଲ୍ୟବାନ ଅସ୍ତ୍ରଶସ୍ତ୍ର ଏବଂ ଅନ୍ୟାନ୍ୟ ଯନ୍ତ୍ରପାତି ନିଜପାଇଁ ମାଟିତଳେ ପୋତି ପକାଇଲେ । ବାକି କେତୋଟି ପୁରୁଣା କଳଙ୍କି ଲାଗିଯାଇଥିବା ଭଙ୍ଗା ବନ୍ଧୁକ ଏବଂ ଆଉ କେତୋଟି ବ୍ୟବହାରର ଅଯୋଗ୍ୟ ଯୁଦ୍ଧ ଜିନିଷ ଏକାଠି ଚିଣ୍ଡ଼ିବ କରି ତା ସହିତ ଗୋଟିଏ ଧନ୍ୟବାଦ ଓ ପ୍ରଶଂସାପୂର୍ଣ୍ଣ ପତ୍ର ଲେଖି ବସାଲତଜଙ୍ଗଙ୍କ ନିକଟକୁ ପଠାଇ ଦେଲେ । ବସାଲତଜଙ୍ଗ ଏହିପରି ହାଇଦରଙ୍କ ଦ୍ୱାରା ବୋକା ବନିଯାଇ ୧୭୬୨ ଖ୍ରୀ:ଅ:ରେ ନିରାଶ ହୋଇ ନିଜ ରାଜ୍ୟ ଆଡ଼େନିକୁ ଚାଲିଗଲେ ।

ହାଇଦର ଅଲ୍ଲି ବର୍ତ୍ତମାନ ସିରାର ଅଧିପତି । ସେ ଗୋଟିକ ପରେ ଗୋଟିଏ, ସିରାର ସମସ୍ତ ସାମନ୍ତ ରାଜ୍ୟକୁ ଅଧିକାର କରିବାକୁ ବସିଲେ । ତତ୍ପରେ ସେ ଚିକବଲପୁର ଆକ୍ରମଣ କଲେ । କିନ୍ତୁ ଚିକବଲପୁରଠାରେ ବିଜୟର କୌଣସି ଆଶା ନ ଦେଖି ସେ କିସ୍ତି ଅନୁସାରେ ସାତ ଲକ୍ଷ ଟଙ୍କା ଦେବାପାଇଁ ଚୁକ୍ତି କରି ସନ୍ଧି ସୂତ୍ରରେ ଆବଦ୍ଧ ହେଲେ । କିନ୍ତୁ ବିରୁଦ୍ଧ ପକ୍ଷ ପରେ ଚୁକ୍ତିଭଙ୍ଗ କରିବାରୁ ହାଇଦର ଅଲ୍ଲି କ୍ରୋଧାନ୍ଧ ହୋଇ ପୁଣି ଯୁଦ୍ଧ କଲେ ଏବଂ ଦଶ ଦିନ ମଧ୍ୟରେ ଚିକ୍‌ବଲପୁର ଦଖଲ କଲେ । ଚିକ୍‌ବଲପୁରର ପଲ୍ଲିଗାର ଶାସନକର୍ତ୍ତା ଯୁଦ୍ଧବନ୍ଦୀରୂପେ ବାଙ୍ଗାଲୋରକୁ ପ୍ରେରିତ ହେଲେ । ତାଙ୍କର ଦୁଇଟି ପୁତ୍ରଙ୍କୁ ମୁସଲମାନ ଧର୍ମରେ ଦୀକ୍ଷିତ କରାଗଲା । ରାୟଦୁର୍ଗର ପଲ୍ଲିଗାର ଶାସନକର୍ତ୍ତା ଓ ହରପନହଲୀର ସର୍ଦ୍ଦାର ସ୍ୱେଚ୍ଛାରେ ହାଇଦରଙ୍କର ଅଧୀନତା ସ୍ୱୀକାର କଲେ । ତତ୍ପରେ ଚିତଲଦୁର୍ଗର ପଲ୍ଲିଗାର ସର୍ଦ୍ଦାର ହାଇଦରଙ୍କୁ ବାଧା ଦେଲେ; କିନ୍ତୁ ପରାସ୍ତ ହୋଇ ପେସ୍‌କସ୍ ଛଡ଼ା ଆହୁରି ତିନି ଲକ୍ଷ ଟଙ୍କା ଜୋରିମାନା ଦେଲେ ।

ଏତିକିବେଳେ ହାଇଦରଙ୍କ ନିକଟରେ ଆହୁରି ଗୋଟିଏ ସୁଯୋଗ ଉପସ୍ଥିତ ହେଲା । ଚିତଲଦୁର୍ଗର ସର୍ଦ୍ଦାର ଗୋଟିଏ ନ' ବର୍ଷର ବାଳକକୁ ହାଇଦରଙ୍କ ନିକଟରେ ଆଣି ଛାଡ଼ିଲେ । ଏହି ବାଳକଟିର ନାମ ହେଉଛି ଚେନ ବାସବାପ୍ପ । ସେ ବେଦନୁରର ଅଧିପତି ବସ୍‌ଆପ୍‌ପା ନାୟକଙ୍କର ପୁତ୍ର । ୧୭୫୫ ଖ୍ରୀ:ଅ:ରେ ବସ୍‌ଆପ୍‌ପାନାୟକ ମରିଯିବାରୁ ବାଳକଟି ବିଧବାରାଣୀଙ୍କର ତତ୍ତ୍ୱା-ବଧାନରେ ରହିଥିଲା । କିନ୍ତୁ ସେଇ ବିଧବା ମାତା ନିଜର ଖାଇକି ରାଜା କରିବ ବୋଲି ବାଳକଟିକି ହତ୍ୟା କରିବାର ଉଦ୍ୟମ କରିବାରୁ

ମୃତରାଜାଙ୍କର ବନ୍ଧୁମାନେ ତାହାଙ୍କୁ ସେ ବିଧବା ରାଣୀଠାରୁ ଅଲଗା କରି ଆଣିଥିଲେ ଏବଂ ତାହାର ନିରାପତ୍ତା ଲାଗି ତାଙ୍କୁ ଶିରାଳ ଦୁର୍ଗରେ ରଖାଇଥିଲେ । ବର୍ତ୍ତମାନ ହାଇଦର ଅଲ୍ଲି ବାଳକଟିକୁ ନିଜ ତତ୍ତ୍ୱାବଧାନରେ ରଖିବା ପାଇଁ ଅନୁରୁଦ୍ଧ ହେଲେ । ଶେଷରେ ଚୁକ୍ତି ହେଲା ଯେ ବାଳକଟିକୁ ନିରାପଦରେ ରଖିବାପାଇଁ ହାଇଦର ଅଲ୍ଲି ଗୃକଳେକ୍ଷ ଟଙ୍କା ନେବେ ।

ବିଜ୍‌ନୂରର ଜନସାଧାରଣ ନେତନବାସବରାଜଙ୍କୁ ରାଜା-ରୂପେ ପାଇବା ପାଇଁ ବ୍ୟାକୁଳ ଥିଲେ । ହାଇଦର ଅଲ୍ଲି ସେଠାରେ ପ୍ରତ୍ୟେକ କ୍ଷେତ୍ରରେ ବାସବରାଜଙ୍କ ନାମରେ ରାଜକୀୟ ଘୋଷଣାମାନ ପ୍ରକାଶ କରୁଥିଲେ । ଫଳରେ ସେ ବିଜ୍‌ନୂରର ଜନସମର୍ଥନ ଲାଭ କଲେ । ତତ୍‌ପରେ ହାଇଦର ବିଜ୍‌ନୂରର ବିଧବା ରାଣୀଙ୍କ ବିରୁଦ୍ଧରେ ସୈନ୍ୟ ଗୃଳନା କଲେ । ମୃତ ରାଜାଙ୍କର ମନ୍ତ୍ରୀ ଲିଙ୍ଗାନା କୃମ୍‌ସିଠାରେ ବନ୍ଦୀ ହୋଇଥିଲେ । ସେ ହାଇଦରଙ୍କୁ ବିଧବାରାଣୀଙ୍କର ସାମରିକ ଆୟୋଜନକୁ ବ୍ୟର୍ଥକଲାଭଳି ସମସ୍ତ ଗୁପ୍ତ ତଥ୍ୟ କହିଦେଲେ । ତତ୍ପରେ ହାଇଦର ସଦର୍ପରେ ଅଗ୍ରସର ହେଲେ । ପଥ ମଧ୍ୟରେ ହାଇଦର ଅଲ୍ଲି ରକ୍ତ ରକ୍ତ ଯାଉଥାନ୍ତି । ବିଜ୍‌ନୂର୍‌ର ବିଧବାରାଣୀ ପ୍ରତ୍ୟେକ କ୍ଷେତ୍ରରେ ହାଇଦର୍‌ଙ୍କୁ ଅଧିକରୁ ଅଧିକ ଅର୍ଥ ଯାଚି ଶେଷରେ ଅଠରଲକ୍ଷ ପାଗୋଡ଼ା ଦେବେ ବୋଲି ପ୍ରତିଶ୍ରୁତି ଦେଲେ । କିନ୍ତୁ ହାଇଦରଙ୍କ ଫଉଜ ବିଜ୍‌ନୂରରେ ପହଞ୍ଚିଲା-ମାତ୍ରେ ରାଣୀ ନିଜ ଭାଇଙ୍କ ସହିତ ସତୁରି ମାଇଲ ଦକ୍ଷିଣରେ ଥିବା ବେଲୁଲ୍‌ଓର ଦୁର୍ଗକୁ ପଳାୟନ କଲେ । ତତ୍ପରେ ହାଇଦର୍ ଅଲ୍ଲି ବାସବରାଜ ଦୁର୍ଗ, ହୋନାବର, ମଙ୍ଗାଲୋର୍ ଏବଂ ବେଲୁଲ୍‌ଓର

ଦୁର୍ଗ, ଗୋଟିକ ପରେ ଗୋଟିଏ ଅଧିକାର କଲେ । ଏହି ବେଲଲ୍‌ଓର ଦୁର୍ଗରେ ଉକ୍ତ ବିଧବା ରାଣୀ ଓ ତାଙ୍କ ଭାଇ ଆଶ୍ରୟ ନେଇଥାନ୍ତି । ଏହି ଦୁର୍ଗକୁ ହାଇଦର ବଡ଼ ଆଶ୍ଚର୍ଯ୍ୟଜନକ ଭାବରେ ଦଖଲ କଲେ । ହାଇଦର ଦୁର୍ଗମଧ୍ୟସ୍ଥ ବିପକ୍ଷ ସୈନ୍ୟବାହିନୀଙ୍କି ସମ୍ବାଦ ଦେଲେ, "ତୁମର ରାଜା ବାସବାପ୍ପ ଏଠାରେ ଉପସ୍ଥିତ ଅଛନ୍ତି । ତୁମ୍ଭେମାନେ କାହିଁକି ତାଙ୍କର ବିରୁଦ୍ଧାଚରଣ କରୁଛ ?" ବଡ଼ ବିସ୍ମୟର କଥା, ବିପକ୍ଷ ବାହିନୀ ସଙ୍ଗେ ସଙ୍ଗେ ବିଧବା ରାଣୀ ଓ ତାଙ୍କ ଭାଇଙ୍କି ଧରି ହାଇଦରଙ୍କ ହସ୍ତରେ ଅର୍ପଣ କଲେ । ବିଜନୁର ପରି ଶକ୍ତିଶାଳୀ ଦୁର୍ଗ ବିନା ଦ୍ୱନ୍ଦ୍ୱରେ ହାଇଦରଙ୍କଦ୍ୱାରା ଅଧିକୃତ ହୋଇଥିଲା ।

ବର୍ତ୍ତମାନ ବାସବାପ୍ପଙ୍କର ଦାବୀକୁ ଉପେକ୍ଷା କରି ନିଜେ ବିଜନୁରର ଅଧିପତି ହେବା ପାଇଁ ହାଇଦରଙ୍କ ହୃଦୟରେ ଆକାଂକ୍ଷା ଜାତ ହେଲା । ସେ ଜନମତକୁ ଚାପି ନିଜେ ରାଜା ହେବାପାଇଁ ନିଜ ବାହୁରେ ଯଥେଷ୍ଟ ଶକ୍ତି ଥିବାର ଅନୁଭବ କଲେ । ଠିକ୍ ଏତିକିବେଳେ ଗୋଟିଏ ଘଟଣା ଘଟିଲା । ତରୁଣ ବାସବାପ୍ପ ଗୋଟିଏ କିଶୋରୀର ପ୍ରେମରେ ପଡ଼ିଥିଲେ । ସେହି କିଶୋରୀଟି ବାସବାପ୍ପଙ୍କ ସହିତ ବିଜନୁର ଯାତ୍ରା କରିଥିଲା । ସେଠାରେ ହାଇଦର କିଶୋରୀଟିକି ଦେଖି ମୁଗ୍ଧ ହୋଇଗଲେ ଏବଂ ବିଜୟର ମୂଲ୍ୟସ୍ୱରୂପ କିଶୋରୀଟିକି ବାସବାପ୍ପଙ୍କଠାରୁ ପୁରସ୍କାର ମାଗିଲେ । କିନ୍ତୁ ପ୍ରେମଶୀଳା କିଶୋରୀଟି ପାଇଁ ରାଜସମ୍ପଦ ତ୍ୟାଗ କରିଦେବା ପାଇଁ ତରୁଣ ବାସବାପ୍ପଙ୍କଠାରେ ଯଥେଷ୍ଟ ତାରୁଣ୍ୟ ଥିଲା । ସେ ହାଇଦରଙ୍କୁ ମନା କରିଦେଲେ । ଏଥିରେ ହାଇଦର ରାଗିଯାଇ ବଳ ପ୍ରୟୋଗ-

ପୂର୍ବକ ଉକ୍ତ କଟେଶୋଗ୍ରାଟିକ ଦଖଲକଲେ । ତତ୍ପରେ ଚେନବାସ-ପ୍ପା, ତାଙ୍କର ବିଧବା ମାତା ଓ ମାମୁଙ୍କୁ ବନ୍ଦୀ କରି ମାଡ୍‌ଡାଗିରି-ଠାକୁ ପଠେଇ ଦେଲେ ।

ହାଇଦର ନିଜକୁ ବିଜ୍‌ନରର ରାଜା ବୋଲି ଘୋଷଣା କଲେ । ବିଜ୍‌ନରକୁ 'ହାଇଦରନଗର' ନାମରେ ନାମିତ କରି ତାହାକୁ ରାଜଧାନୀ କଲେ । ଏଠାରେ ସେ ନିଜ ନାମରେ 'ବାହାଦୁର୍ ପାଗୋଡ଼ା' ନାମକ ନୂତନ ମୁଦ୍ରା ପ୍ରଚଳନ କରିଥିଲେ । ଏହି ମୁଦ୍ରାରେ ସେ ହିନ୍ଦୁ ଦେବତାଙ୍କ ଚିତ୍ର ଓ ନିଜ ନାମର ପ୍ରଥମ ଅକ୍ଷରଟି ଖଚିତ କରାଇଥିଲେ । ବିଜ୍‌ନରର ଜନସାଧାରଣ ଏଥିରେ ନ ଭୁଲି ହାଇଦରଙ୍କ ବିରୁଦ୍ଧରେ ବିଦ୍ରୋହ କରିଥିଲେ । କିନ୍ତୁ ହାଇଦର ପ୍ରାୟ ଏକ ହଜାର ପର୍ଯ୍ୟନ୍ତ ଲୋକଙ୍କୁ ହତ୍ୟା କରି ଏଠାରେ ଅବସ୍ଥା ଶାନ୍ତ କରାଇଥିଲେ । ତତ୍ପରେ ହାଇଦର ଏଠାରେ ଭେଙ୍କଟପ୍ପାଙ୍କୁ ଶାସନକର୍ତ୍ତା ରୂପେ ନିଯୁକ୍ତ କରିଥିଲେ । ୧୭୬୩ ଖ୍ରୀ:ଅ:ରେ ହାଇଦର ଫୈଜୁଲ୍ଲାଙ୍କୁ ସୁନ୍ଦ ପ୍ରେରଣ କଲେ ଏବଂ ସୁନ୍ଦ ମଧ୍ୟ ହାଇଦରଙ୍କ ଅଧୀନକୁ ଆସିଲା ।



# ମହାରାଷ୍ଟ୍ର ଶିକ୍ଷା

ମରହଟ୍ଟାମାନେ ଉତ୍ତରପୂ ପାଣିପଥ ଯୁଦ୍ଧରେ ବ୍ୟାପୃତ ରହିଥିବାରୁ ୧୭୬୪ ଖ୍ରୀ:ଅ: ପର୍ଯ୍ୟନ୍ତ ଦକ୍ଷିଣ ଭାରତୀୟ ରାଜ୍ୟଗୁଡ଼ିକ ବିଷୟରେ ଚିନ୍ତା କରିବାକୁ ସମୟ ପାଇ ନ ଥିଲେ । ଏହି ଅବସରରେ ହାଇଦର ଅଲ୍ଲି ମହୀଶୂରରେ ନିଜର ଆସ୍ଥାନ ଦୃଢ଼କରି ନେଇ ଆହୁରି କେତେଗୁଡ଼ିଏ ରାଜ୍ୟ ଅଧିକାର କଲେ । ହାଇଦର ହାଇଦ୍ରାବାଦର ନିଜାମକୁ ମଧ୍ୟ ନିଜ ପକ୍ଷକୁ ଆକୃଷ୍ଟ କରିନେଇ ଥିଲେ ।

ତୁଙ୍ଗଭଦ୍ରାର ରାଜା ମୁରାରିରାଓ ହାଇଦରଙ୍କ ପଥରେ କଣ୍ଟା ହୋଇ ରହିଥିଲେ । ସେ ମରହଟ୍ଟା ଶକ୍ତିକୁ ସର୍ବଦା ସାହାଯ୍ୟ କରୁଥିଲେ । ତେଣୁ ପେଶବା ମାଧବ ରାଓ ତାଙ୍କ ପ୍ରତି ସନ୍ତୁଷ୍ଟ ହୋଇ ତାଙ୍କୁ 'ସେନାପତି' ଉପାଧି ଦେଇଥିଲେ । ମାଧବ ରାଓ ହାଇଦର ଅଲ୍ଲିଙ୍କର ପ୍ରଧାନ ଶତ୍ରୁ ଥିଲେ । ସେ ବିଭିନ୍ନ ରଣକ୍ଷେତ୍ରରେ ହାଇଦରଙ୍କୁ ଆକ୍ରମଣ କରି ଘନଘନ ପରାସ୍ତ କରିଥିଲେ । ସେ ଅନନ୍ତପୁରଠାରେ ହାଇଦରଙ୍କୁ ସମ୍ପୂର୍ଣ୍ଣ ଭାବରେ ପରାସ୍ତ କରିଥିଲେ । ତେଣୁ ହାଇଦର ବାଧ୍ୟ ହୋଇ ସନ୍ଧି ପ୍ରସ୍ତାବ କଲେ ।

ମାଧବ ରାଓ ଯେଉଁ ସର୍ତ୍ତସବୁ ବାଢ଼ି ବସିଥିଲେ ତାହା ଯଦି ଗୃହୀତ ହୋଇଥାନ୍ତା ତେବେ ହାଇଦର ଚୂର୍ଣ୍ଣୀଭୂତ ହୋଇଯାଇ-ଥାନ୍ତେ । କିନ୍ତୁ ରଘୁନାଥ ରାଓ (ରାଘୋବା)ଙ୍କ ପରାମର୍ଶକ୍ରମେ ମାଧବ ରାଓ ହାଇଦରଙ୍କୁ ସରଳ ଚୁକ୍ତିରେ ଆବଦ୍ଧ କରିଥିଲେ । ଏହି ଚୁକ୍ତିରେ ଉଲ୍ଲେଖ ଥିଲା ଯେ ହାଇଦର ଅଲ୍ଲି ପେଶବାଙ୍କୁ ଅଠେଇଶ ଲକ୍ଷ ଟଙ୍କା ଦେବେ, ତାହାଛଡ଼ା ବଙ୍କପୁର, ହରିହର ଓ ବାସବପାଟଣା ତାଲୁକାମାନ ଦେବେ । ଗୋପାଳ ରାଓଙ୍କ ଭାଇଙ୍କି ମୁକ୍ତ ଦେବେ । ମୁରାରି ରାଓ ଓ ସାବେନୁରର ରାଜାଙ୍କୁ ସେମାନଙ୍କ ରାଜ୍ୟମାନ ଫେରସ୍ତ ଦେବେ ।

ରଘୁନାଥ ରାଓ ଏପରି ସରଳ ଚୁକ୍ତି ବାଢ଼ିବାର ଯଥେଷ୍ଟ କାରଣ ଥିଲା । ସେ ନିଜେ ପେଶବା ହେବାକୁ ଋଚ୍ଛୁ ଥିଲେ । ଏଥିପାଇଁ ଭବିଷ୍ୟତରେ ହାଇଦର ଅଲ୍ଲିଙ୍କର ସାହାଯ୍ୟ ପାଇବା ଆଶାରେ ସେ ଏପରି ଭାବରେ ହାଇଦରଙ୍କ ପକ୍ଷ ନେଇ ଲଢ଼ିଥିଲେ ।

୧୭୬୫ ଖ୍ରୀ: ଅ: ମାର୍ଚ୍ଚ ମାସରେ ଏହି ଚୁକ୍ତି ସ୍ୱୀକୃତ ହୋଇଥିଲା । କିନ୍ତୁ ହାଇଦର ସ୍ପଷ୍ଟ ଜାଣିଥିଲେ ଯେ ମରହଟ୍ଟା-ମାନେ ଏତିକରେ କେବେ ସନ୍ତୁଷ୍ଟ ରହିବେ ନାହିଁ । ସେମାନେ ଖୁବ୍ ଶୀଘ୍ର ପୁନରାକ୍ରମଣ କରିପାରନ୍ତି । ସୁତରାଂ ହାଇଦର ଅଲ୍ଲି ନିଜାମ୍ କିମ୍ବା ଇଂରେଜମାନଙ୍କର ସହଯୋଗ ନେଇ ପାରିଥାନ୍ତେ । ମାତ୍ର ସେମାନଙ୍କ ଉପରେ ହାଇଦରଙ୍କର ବିଶ୍ୱାସ ନ ଥିଲା । ଏତିକିବେଳେ ପେଶବା ହାଇଦରଙ୍କ ବିରୁଦ୍ଧରେ ନିଜାମଙ୍କ ସହିତ ଚୁକ୍ତି କରିବସିଲେ । ହାଇଦର ମଧ୍ୟ ନୀରବ ହୋଇ ବସି ରହି ନ ଥିଲେ । ସେ ମରହଟ୍ଟାମାନଙ୍କ ନିଜ ରାଜ୍ୟସ୍ଥ

କେତେକ ଅସନ୍ତୁଷ୍ଟ ମରହଟ୍ଟାଙ୍କୁ ଡିହାଇ ସେଠାରେ ଗୃହବିବାଦ ସୃଷ୍ଟି କରିବାକୁ ଚକ୍ରାନ୍ତ କରିଥିଲେ । କିନ୍ତୁ ମାଧବ ରାଓଙ୍କର କୌଶଳୀ ଗୁପ୍ତଚର ବିଭାଗ ଏକଥା ଜାଣିପାରି ମାଧବ ରାଓଙ୍କୁ ସମ୍ବାଦ ଦେବାରୁ ମାଧବ ରାଓ ଷଡ଼ଯନ୍ତ୍ରରେ ଲିପ୍ତ ଥିବା ବାଗୁଳ ନାଏକଙ୍କ ଦୁର୍ଗ ଅଧିକାର କରିନେଇ ତାଙ୍କପାଇଁ କେବଳ ଏକ ଲକ୍ଷ ଟଙ୍କାର ପେନ୍‌ସନ୍ ଖଞ୍ଜିଦେଲେ । ଏତିକିବେଳେ ନିଜାମ ଇଂରେଜମାନଙ୍କ ସହିତ ବନ୍ଧୁତା ଚୁକ୍ତିରେ ଆବଦ୍ଧ ହେଲେ । ମାଧବ ରାଓ ନିଜାମଙ୍କ ସହିତ ଏବଂ ନିଜାମ ଇଂରେଜଙ୍କ ସହିତ ଏହିପରି ଭାବରେ ଚୁକ୍ତି ସମ୍ପାଦନା କରିଥିଲେ । ତେଣୁ ମାଧବ ରାଓ କାହାରିକି ଅପେକ୍ଷା ନ କରି ହାଇଦରଙ୍କୁ ଆକ୍ରମଣ କରିବାପାଇଁ କୃଷ୍ଣା ନଦୀ ଅତିକ୍ରମ କଲେ । ଏକଥା ଜାଣି ହାଇଦର ସେମାନଙ୍କର ଆଗମନ ପଥ ମଧ୍ୟରେ ଥିବା ସମସ୍ତ ଜଳରେ ବିଷ ମିଶାଇ ବିଷାକ୍ତ କରିଦେଲେ । ଶସ୍ୟସବୁ ପୋଡ଼ି ଧ୍ୱଂସ କରିଦେଲେ । ତେଣୁ ମରହଟ୍ଟାମାନେ ପଥପାର୍ଶ୍ୱସ୍ଥ ଘର ଚାଳରୁ ଛଣ ଓଲାରି ଘୋଡ଼ାମାନଙ୍କୁ ଖାଇବାକୁ ଦେଲେ । ଶୁଷ୍କ ନଦୀଶଯ୍ୟାକୁ ଖୋଳି ଝର ପକାଇ ପାଣି ପିଇଲେ ।

ସେତେବେଳେ ହାଇଦରଙ୍କ ଭଗିନୀପତି ମିର୍ ରେଜା ହାଇଦରଙ୍କ ପକ୍ଷରୁ ସିରାରେ ଶାସନକର୍ତ୍ତା ଥିଲେ । ସେ ମରହଟ୍ଟାମାନଙ୍କ ସହିତ ଯୁଦ୍ଧ କରିବାକୁ ବାହାରି ପଡ଼ିଲେ । କିନ୍ତୁ ପରେ ଉପାୟହୀନ ହୋଇ ମରହଟ୍ଟାମାନଙ୍କ ପକ୍ଷ ଗ୍ରହଣ କଲେ । ପେଶୱା ମାଧବ ରାଓ ମିର୍ ରେଜାଙ୍କୁ ଭଲ ପାଇଲେ ଏବଂ ଦୁଇ ହଜାର ମରହଟ୍ଟା ସୈନ୍ୟଙ୍କୁ ପୋଷିବାପାଇଁ ତାଙ୍କୁ ଗୁରୁମୁକୁଣ୍ଡ ତାଲୁକଟି ଅର୍ପଣ କଲେ ।

ମିର୍ ଜେଜାଙ୍କ କାର୍ଯ୍ୟରେ ଅସନ୍ତୁଷ୍ଟ ହୋଇ ଦଳେ ପିଣ୍ଡାରୀ ଦଳେ ରାତିରେ ମିର୍ ଜେଜାଙ୍କର ବହୁତ ଦ୍ରବ୍ୟ ଲୁଟିକରି ନେଲେ । ଏ ଘଟଣା ଶୁଣି ମାଧବ ରାଓ କ୍ରୋଧରେ ଅଗ୍ନିଶର୍ମା ହୋଇଗଲେ । ସେ ଶୃଙ୍ଖଳା ପଚାଶ ଜଣ ସମ୍ପୃକ୍ତ ପିଣ୍ଡାରୀଙ୍କି ଧରିଆଣି ସେମାନଙ୍କର ହାତ କାଟି ପକାଇଲେ । ସ୍ୱୟଂ ପେଶବା ଜେଜାଙ୍କ ନିକଟକୁ ଯାଇ ତାଙ୍କୁ ବୋଧଶୋଧ କଲେ । ତାଙ୍କ ନିକଟକୁ ବହୁତ ପୋଷାକପତ୍ର, ବାସନକୁସନ, ମିଠେଇଭାର ଓ ଘୋଡ଼ାସବୁ ପଠେଇଥିଲେ । ତାହାଛଡ଼ା ତାଙ୍କୁ ଏକ ଲକ୍ଷ ଟଙ୍କା କ୍ଷତିପୂରଣ ଦେଇଥିଲେ ।

ତତ୍ପରେ ମାଧବ ରାଓ ମାଉଡ଼ାଗିରି ଦଖଲ କରି ସେଠାରେ ବନ୍ଦୀରୂପେ ଥିବା ରେନବାସବାସ୍ନୁ, ତାଙ୍କ ବିଧବାମାତା ଓ ମାମୁଙ୍କୁ ମୁକ୍ତ ଦେଇ ସମ୍ମାନିତ କଲେ । ତତ୍ପରେ ସେ ଚନରାୟ-ପୁର, ମଦଥିର, ଦୋଦ୍‌ବଲପୁର, ଶିକ୍‌ବଲପୁର, ଦେବନହଲି, ହସକୋଟ୍ ଓ କୋଲାର ପ୍ରଭୃତି ଦଖଲ କରିଗଲେ । ଏ ସବୁ ଦେଖି ହାଇଦର ଅଲ୍ଲି ଚାଟକା ହୋଇଗଲେ । କିନ୍ତୁ ଏତିକିବେଳେ ହାଇଦର ଅଲ୍ଲିଙ୍କ ପାଇଁ ଗୋଟିଏ ସୁଯୋଗ ଉପସ୍ଥିତ ହେଲା । ହାଇଦ୍ରାବାଦ୍‌ର ନିଜାମ ହାଇଦର ଅଲ୍ଲିଙ୍କ ବିରୁଦ୍ଧରେ ଯୁଦ୍ଧ କରିବାକୁ ବାହାରିଲେ । କିନ୍ତୁ ନିଜାମଙ୍କ ହସ୍ତକ୍ଷେପ ପୂର୍ବରୁ ହାଇଦରଙ୍କ ସହିତ ଗୋଟିଏ ଚୁକ୍ତି କରିପକେଇବା ପାଇଁ ମାଧବ ରାଓ ଚଞ୍ଚଳ ହୋଇ ପଡ଼ିଲେ । ମାଧବ ରାଓ ହାଇଦରଙ୍କ-ଠାରୁ ତେତିଶ ଲକ୍ଷ ଟଙ୍କା ଓ କେତୋଟି ରାଜ୍ୟ ନେବାର ସିଦ୍ଧାନ୍ତ କରି ହାଇଦରଙ୍କ ସହିତ ଚୁକ୍ତି କରିଗଲେ । ନିଜାମ ପଛରେ ଆସି ହତାଶ ହୋଇ ଫେରିଗଲେ ।



# ମାନ୍ଦ୍ରାଜର ଛାଟିଉପରେ ହାଇଦର

ଦାକ୍ଷିଣାତ୍ୟରେ ଇଂରେଜ ଓ ଫରାସୀମାନଙ୍କ ମଧ୍ୟରେ ସର୍ବଦା ସ୍ୱାର୍ଥର ସଂଘର୍ଷ ଲାଗି ରହୁଥିଲା । ଇଉରୋପରେ ସାତବର୍ଷିଆ ଯୁଦ୍ଧ ଲାଗିଯିବାରୁ ଭାରତରେ ମଧ୍ୟ ଉଭୟ ପକ୍ଷ ମଧ୍ୟରେ ଯୁଦ୍ଧ ଲାଗିଲା । ଦାକ୍ଷିଣାତ୍ୟରେ ଥିବା ଫରାସୀ ଶାସକ କାଉଣ୍ଟ ଲାଲ ସାହାଯ୍ୟ ପାଇବା ଲାଗି ହାଇଦରଙ୍କ ଦ୍ୱାରସ୍ଥ ହେଲେ । ହାଇଦର ଅଲ୍ଲି ଫରାସୀମାନଙ୍କୁ ସାହାଯ୍ୟ କରିବାପାଇଁ ଚାରି ହଜାର ଅଶ୍ୱାରୋହୀ ସୈନ୍ୟଙ୍କୁ ପଠାଇଲେ । ଏହି ଫଉଜ ପଥ ମଧ୍ୟରେ ମେଜର ମୁରଙ୍କୁ ପରାସ୍ତ କଲେ । ଏହି ଖଣ୍ଡଯୁଦ୍ଧରେ ତିରିଶ ଜଣ ଇଂରେଜ ନିହତ ହୋଇଥିଲେ । ତତ୍ପରେ ଏହି ଫଉଜ ପଣ୍ଡିଚେରୀରେ ପହଞ୍ଚି ଥିଲେ ।

ହାଇଦର ଅଲ୍ଲି ନିଜର ସ୍ୱାର୍ଥସାଧନ ସକାଶେ ଫରାସୀ-ମାନଙ୍କ ପକ୍ଷକୁ ଢଳିଥିଲେ । କାରଣ ଫରାସୀମାନେ ହାଇଦରଙ୍କ ରାଜ୍ୟବିସ୍ତାର ନୀତିକୁ ସମର୍ଥନ ଓ ଉତ୍ସାହିତ କରୁଥିଲେ । ହାଇଦର ଫରାସୀମାନଙ୍କୁ ସାହାଯ୍ୟ କରିବା ପାଇଁ ୟୁସୁଫ୍‌ଖାଁଙ୍କୁ

ସୈନ୍ୟ ପ୍ରେରଣ କରିଥିଲେ । ହାଇଦର ଅଲ୍ଲିଙ୍କ ରାଜସଭାରେ ଫରାସୀ ସେନାପତି କର୍ଣ୍ଣେଲ ଲୁମ୍, କର୍ଣ୍ଣେଲ ମନ୍‌ସଙ୍କ ସହିତ ଆହୁରି ସାତ ଆଠ ଜଣ ଫରାସୀ ଅଫିସର ରହିଥିଲେ । ପରେ ଓଲନ୍ଦାଜ୍ ମଧ୍ୟ ହାଇଦର୍‌ଙ୍କ ରାଜସଭାକୁ ଆସିଥିଲେ ।

ମାନ୍ଦ୍ରାଜର ଜନସାଧାରଣ ମଧ୍ୟ ହାଇଦରଙ୍କୁ ବଡ଼ ଖୁସି ପାଉଥିଲେ । ସେମାନେ ମାଧବ ରାଓଙ୍କ ବିରୁଦ୍ଧରେ ହାଇଦରଙ୍କୁ ତୋପ, ବାରୁଦ ଏବଂ ଅନ୍ୟାନ୍ୟ ଅସ୍ତ୍ରଶସ୍ତ୍ରସବୁ ସାହାଯ୍ୟ ଦେଉଥିଲେ । ସେହିପରି ସ୍ନେହ ନ ଥିଲେ ସେମାନେ ମାଧବରାଓଙ୍କ ପରି ପ୍ରତାପଶାଳୀ ପେଶବାଙ୍କ ବିରୁଦ୍ଧରେ ଯିବାକୁ ସାହସ କରି ନ ଥାନ୍ତେ । ହାଇଦର ମଧ୍ୟ ନିଜ ରାଜ୍ୟରେ ସେମାନଙ୍କୁ ବହୁତ ବାଣିଜ୍ୟ ସୁବିଧା ଦେଉଥିଲେ ।

କର୍ଣ୍ଣାଟର ନବାବ ମହମ୍ମଦ ଅଲ୍ଲିଙ୍କ ସହିତ ହାଇଦର-ଅଲ୍ଲିଙ୍କର ଆଦୌ ପଡ଼ୁ ନ ଥିଲା । ହାଇଦରଙ୍କ ନାଁ ଶୁଣିଲେ ମହମ୍ମଦ ଅଲ୍ଲିଙ୍କର ନିଦ୍ରା ଦେଉଁଥିଲା । ମହମ୍ମଦ ଅଲ୍ଲି ସର୍ବଦା ଇଂରେଜଙ୍କ ପକ୍ଷରେ ରହିଥିଲେ । ହାଇଦର ମହମ୍ମଦ ଅଲ୍ଲିଙ୍କ ଶତ୍ରୁ ଚନ୍ଦାସାହେବଙ୍କ ପୁଅ ରାଜାସାହେବଙ୍କୁ ନିଜ ଅଧୀନରେ ଉଚ୍ଚ ରାଜକାର୍ଯ୍ୟ ଦେଇଥିଲେ ।

ବର୍ତ୍ତମାନ ହାଇଦର ଅଲ୍ଲି ହାଇଦ୍ରାବାଦ୍‌ର ନିଜାମଙ୍କୁ ହାତ କରିବାକୁ ଚାହିଁଲେ । ସେ ନିଜାମଙ୍କ ନିକଟକୁ ପଚିଶ ହଜାର ପାଟଘୋଡ଼ା ଉପଢୌକନସ୍ୱରୂପ ପ୍ରେରଣ କରିଥିଲେ । ନିଜାମଙ୍କର ଜଣେ ପ୍ରଭାବଶାଳୀ ସଭାସଦ୍ ଶୋରଜଙ୍ଗ ଇଂରେଜମାନଙ୍କ ସହିତ ଚୁକ୍ତି କରିବାକୁ ଘୃଣା କରୁଥିଲେ । ଏହିସବୁଥିରେ ପ୍ରଭାବିତ ହୋଇ ନିଜାମ ହାଇଦରଙ୍କ ସହିତ ସନ୍ଧି କଲେ ।

ମାଧବରାଓ ପୂର୍ବରୁ ହାଇଦରଙ୍କ ସହିତ ଚୁକ୍ତି କରିଥିଲେ । ବର୍ତ୍ତମାନ ନିଜାମ ହାଇଦରଙ୍କ ସହିତ ଚୁକ୍ତିସୂତ୍ରରେ ଆବଦ୍ଧ ହେଲେ । ଫଳରେ ମାନ୍ଦ୍ରାଜ ସରକାର ଏକୁଟିଆ ପଡ଼ିଗଲେ । ତାହାଙ୍କର ସମସ୍ତ କୂଟନୀତି ଓ ରାଜନୀତି ଏହିଠାରେ ହାଇଦରଙ୍କ ନିକଟରେ ପରାଜୟ ସ୍ୱୀକାର କଲା । ହାଇଦରଙ୍କ ସହିତ କୂଟନୈତିକ ଖେଳରେ ପରାସ୍ତ ହୋଇ ଇଂରେଜମାନେ ଅତ୍ୟନ୍ତ ଅପମାନିତ ହେଲେ ।

ପ୍ରଥମ ମହୀଶୂର ସମର—ଏହି ଯୁଦ୍ଧ ୧୭୬୭ ଖ୍ରୀ:ଅ: ଅଗଷ୍ଟ ମାସରୁ ୧୭୬୮ ଖ୍ରୀ:ଅ: ମାର୍ଚ୍ଚ ମାସ ପର୍ଯ୍ୟନ୍ତ ଲାଗି ରହିଥିଲା । ହାଇଦର ଅଲ୍ଲି ଓ ନିଜାମ ଆର୍କଟର ନବାବଙ୍କ ରାଜ୍ୟ ଆକ୍ରମଣ କରି ଲୁଟିକଲେ । ହାଇଦରଙ୍କର ଚାରି ହଜାର ଅଶ୍ୱାରୋହୀ ସୈନ୍ୟ ମଖଦମ ସାହେବଙ୍କ ନେତୃତ୍ୱରେ ଲୁଟତରାଜ କଲେ । ତତ୍ପରେ ହାଇଦର ଓ ନିଜାମ କାବେରୀପତ୍ତନ ଅବରୋଧ କଲେ । ହାଇଦରଙ୍କର କେତେକ ସୈନ୍ୟ ଶିଙ୍ଗାରପେଟା-ବାଟେ କର୍ଣ୍ଣାଟ ଭିତରକୁ ପ୍ରବେଶ କଲେ । ସେତେବେଳେ କର୍ଣ୍ଣେଲ ସ୍ମିଥ୍ ଥା'ନ୍ତି ମାନ୍ଦ୍ରାଜ ପ୍ରେସିଡେନ୍ସିର ସର୍ବୋଚ୍ଚ ଇଂରେଜ ସେନାପତି । ସେ ସୈନ୍ୟବାହିନୀ ଧରି କାବେରୀପତ୍ତନ ଚାଲିଲେ । କିନ୍ତୁ କାବେରୀପତ୍ତନ ଉଦ୍ଧାର କରିବାର ଉପାୟ ନ ଦେଖି ତ୍ରିନୋମାଲ୍ଲି ଉଦ୍ଦେଶ୍ୟରେ ଗତି କଲେ । ଶିଙ୍ଗାରପେଟାର ରାସ୍ତା ଘୋର ଅରଣ୍ୟାନୀରେ ପରିପୂର୍ଣ୍ଣ ଥିଲା । ସ୍ମିଥ ଶିଙ୍ଗାରପେଟା ଅଭିମୁଖେ ଗତି କଲେ । ହାଇଦରଙ୍କ ଅଶ୍ୱାରୋହୀମାନେ ଲୁଚି ଲୁଚି ସ୍ମିଥଙ୍କ ପଛେ ପଛେ ଚାଲିଥାନ୍ତି । ସେହି ଶିଙ୍ଗାରପେଟାଠାରେ ହାଇଦରଙ୍କ ଅଶ୍ୱାରୋହୀ ସୈନ୍ୟ ସ୍ମିଥଙ୍କ ଦଳକୁ ଭୀଷଣ ଭାବରେ

ଆକ୍ରମଣ କଲେ । ଏହାଠାରେ ହାଇଦରଙ୍କ ଅଶ୍ୱବାହିନୀର ଦକ୍ଷତା ସ୍ପଷ୍ଟ ପ୍ରମାଣିତ ହୋଇଥିଲା । ହାଇଦରଙ୍କ ଘୋଡ଼ାକବାହିନୀ ଇଂରେଜଙ୍କ ଘୋଡ଼ାକବାହିନୀଠାରୁ ଯଥେଷ୍ଟ ପରିମାଣରେ ଦକ୍ଷ, ସୁଶିକ୍ଷିତ ଓ ସାହସୀ ଥିଲା । ତତ୍ପରେ ଚାଙ୍ଗମାଠାରେ ଉଭୟ ପକ୍ଷ ମଧ୍ୟରେ ଯୁଦ୍ଧ ହୋଇଥିଲା । ହାଇଦରଙ୍କର ବିପୁଳ ବାହିନୀ ବ୍ରିଟିଶ ସେନାଙ୍କର ସମ୍ମୁଖୀନ ହୋଇଥିଲେ । ହାଇଦରଙ୍କ ବାହିନୀ ଇଂରେଜ ସେନାକୁ ପରାସ୍ତ କରି ସେଣ୍ଟ ଥମାସ ମାଉଣ୍ଟ ନିକଟକୁ ଗଲେ ଓ ସେଠାରେ ମାନ୍ଦ୍ରାଜବାସୀଙ୍କି ଚମକ୍ରିତ କରିଦେଇଥିଲେ । ମାନ୍ଦ୍ରାଜର ଗଭର୍ଣ୍ଣର, ମହମ୍ମଦ ଅଲ୍ଲି ଓ ତାଙ୍କ ପୁଅ, କର୍ଣ୍ଣେଲ କଲ ଓ କାଉନସିଲର ସଭ୍ୟମାନେ ନିଜ ଜୀବନକୁ ଘୋର ସଙ୍କଟାପନ୍ନ ମନେକଲେ । ସେମାନେ ଉପାୟାନ୍ତର ନ ଦେଖି ପ୍ରାଣ ଭୟରେ ଲୁଚିକରି ଅଣ୍ଣୀ ଅଞ୍ଚଳକୁ ଚାଲିଗଲେ । ସେଠାରେ ଗୋଟିଏ ଛୋଟିଆ ଡଙ୍ଗାଟିଏ ପାଇ ନିରାପଦ ସ୍ଥାନକୁ ଖସି ଚାଲିଗଲେ । ତିନି ଦିନ ପରେ ଇଂରେଜ ସୈନ୍ୟ ପୁଣି ସଜବାଜ ହୋଇ ବାହାରିଲେ । ତତ୍ପରେ ଟ୍ରିନୋମାଲି ଓ ବେନିଯାମ୍ବୋଦିଠାରେ ଯୁଦ୍ଧ ହୋଇଥିଲା । ଇଂରେଜମାନେ ତିରୁପତି ଦଖଲ କଲେ । କର୍ଣ୍ଣେଲ ଉଡ଼ଙ୍କ ବାହିନୀ ସ୍ମିଥଙ୍କ ବାହିନୀ ସହିତ ଯୋଗ ଦେଲେ । ମେଜର ଫିଜରଲାବ୍ ସମସ୍ତ ଶସ୍ୟ ଓ ଗୋରୁଙ୍କୁ ଗୋଟିଏ ମାଟି ଘରେ ବନ୍ଦ କରି ଜଗି ରହିଲେ । ହାଇଦରଙ୍କ ସୈନ୍ୟମାନେ ତିନି ଦଳ ହୋଇ ତାଙ୍କୁ ଆକ୍ରମଣ କଲେ । ଏତିକବେଳେ ହାଇଦର ଅଲ୍ଲି ବସିଥିବା ଘୋଡ଼ା ଦେହରେ ଗୋଟାଏ ଗୁଳି ଆସି ବାଜିଗଲା, ଆଉ ଏକ ଆଘାତରେ ହାଇଦର ଅଲ୍ଲିଙ୍କ ଶିରସ୍ତ୍ର ଟଟଡ଼ି ଛିନ୍ନଛିନ୍ନ ହୋଇ ଉଡ଼ିଗଲା । ତଥାପି ହାଇଦର ତାଙ୍କର ଅଧିକାଂଶ ସୈନ୍ୟବଳ ଧରି ମାଙ୍ଗାଲୋରକୁ ପଳାୟନ କଲେ ।

ଏହିକବେଳେ ସନ୍ଧି କରିବା ପାଇଁ ହାଇଦ୍ରାବାଦର ନିଜାମ ମାନ୍ଦ୍ରାଜ ସରକାରଙ୍କ ଦ୍ୱାରସ୍ଥ ହେଲେ । ମାନ୍ଦ୍ରାଜ ସରକାର ତାଙ୍କୁ ହାଇଦରଙ୍କଠାରୁ ସମସ୍ତ ସମ୍ପର୍କ ଛୁଟାଇ ଦେବାପାଇଁ କହିଲେ । ତାହାହିଁ ହେଲା । ତା ୨୨-୩-୧୭୬୮ ରେ ମାନ୍ଦ୍ରାଜ ସରକାର ଓ ହାଇଦ୍ରାବାଦର ନିଜାମଙ୍କ ମଧ୍ୟରେ ଚୁକ୍ତି ହୋଇଗଲା ।

ବର୍ତ୍ତମାନ ହାଇଦରଙ୍କୁ ବ୍ରିଟିଶମାନଙ୍କ ସହିତ ଏକାକୀ ଯୁଦ୍ଧ କରିବାକୁ ପଡ଼ିଲା । ଏହି ଯୁଦ୍ଧରେ ହାଇଦରଙ୍କ ପୁତ୍ର ଟିପୁ ଯୋଗଦାନ କରିଥିଲେ । ହାଇଦର ଅଲ୍ଲି ଖୁବ୍ କୌଶଳର ସହିତ ଲଢ଼େଇ କରିଥିଲେ । ହାଇଦରଙ୍କ ସୈନ୍ୟମାନେ ବୀରତ୍ୱପୂର୍ଣ୍ଣ ଭାବରେ ଭୀଷଣ ଯୁଦ୍ଧ କରିଥିଲେ । କ୍ୟାପଟେନ୍ ମାଥିଉ ଆଶ୍ଚର୍ଯ୍ୟ ହୋଇ କହିଥିଲେ, "ହାଇଦର ଅଲ୍ଲିଙ୍କ ସୈନ୍ୟମାନେ ଯେପରି ବୀରତ୍ୱର ସହିତ ଯୁଦ୍ଧ କଲେ କୌଣସି କଳା ଲୋକ ସେପରି ଯୁଦ୍ଧ କରିବାର ମୁଁ ଆଦୌ ଦେଖି ନ ଥିଲି ।" ଏହି ଯୁଦ୍ଧରେ ଇଂରେଜମାନେ ଉପାୟାନ୍ତର ନ ଦେଖି ଅଚଳ ହୋଇପଡ଼ିଲେ । ଫଳରେ ମାନ୍ଦ୍ରାଜ ସରକାର ହାଇଦର ଅଲ୍ଲିଙ୍କ ସହିତ ସନ୍ଧି କରିବାପାଇଁ ବ୍ୟାକୁଳ ହୋଇପଡ଼ିଲେ । ତା ୪-୪-୧୭୬୯ ରେ ମାନ୍ଦ୍ରାଜଠାରେ ଉଭୟ ପକ୍ଷ ଚୁକ୍ତିପତ୍ର ସ୍ୱାକ୍ଷର କରିଥିଲେ । ଏହି ଚୁକ୍ତି ଅନୁସାରେ ଉଭୟ ପକ୍ଷ ଯେ ଯାହା ରାଜ୍ୟ ସେ ତାହା ଫେରି ପାଇଲେ । କେବଳ କରୁର ରାଜ୍ୟକୁ ହାଇଦର ଅଲ୍ଲି ଫେରେଇ ନ ଦେଇ ନିଜ ଅଧୀନରେ ରଖିଲେ । ଏଥିରେ ଗୋଟିଏ ବଡ଼ ସର୍ତ୍ତ ରହିଲା ଯେ ଆକ୍ରମଣ ବା ଆତ୍ମରକ୍ଷା ବେଳେ ପରସ୍ପର ପରସ୍ପରକୁ ସବୁତୋଭାବେ ସାହାଯ୍ୟ କରିବେ ।

ଏହି ଯୁଦ୍ଧହିଁ ଭାରତବର୍ଷରେ ପ୍ରଥମ ଯୁଦ୍ଧ ଯେଉଁଥିରେ କି ଇଂରେଜମାନେ ସନ୍ଧି କରିବାପାଇଁ ଗୋଟିଏ ଦେଶୀୟ ଶକ୍ତିର ଦ୍ୱାରସ୍ଥ ହୋଇଥିଲେ । ହାଇଦର୍ ଏ ସମ୍ପର୍କରେ ଗୋଟିଏ ବ୍ୟଙ୍ଗ ଚିତ୍ର ପ୍ରସ୍ତୁତ କରାଇଥିଲେ । ସେଥିରେ ମାନ୍ଦ୍ରାଜର ଗଭର୍ଣ୍ଣର ଓ କାଉନ୍‌ସିଲ୍ ସଭ୍ୟମାନେ ହାଇଦରଙ୍କ ନିକଟରେ କୃତାଞ୍ଜଳି-ପୁଟରେ ଜାନୁପାତପୂର୍ବକ ବସିଚନ୍ତି । ଡୁପ୍ଲେଙ୍କ ନାକକୁ ହାଇଦର୍ ସ୍ୱୟଂ ଚିମୁଟି ଧରିଚନ୍ତି, ଆଉ ମଧ୍ୟ ସେଥିରୁ ଗିନି ଓ ପାଗୋଡ଼ାସବୁ ଝଡ଼ୁଚି । ଇଂରେଜ ସେନାପତି ସ୍ମିଥ୍ ନିଜର ଖଣ୍ଡାଟିକି ଦୁଇ ଖଣ୍ଡ କରି ଭାଙ୍ଗି ଦେଇଚନ୍ତି, ଆଉ ନିଜ ହାତରେ ଅତି ସନ୍ତର୍ପଣରେ ଚୁକ୍ତିପତ୍ରଟି ଧରିଚନ୍ତି ।

ଏହି ସନ୍ଧିପରେ "ବ୍ରିଟିଶ୍ କୋର୍ଟ ଅଫ୍ ଡାଇରେକ୍‌ଟର୍‌ସ" ଯେଉଁ ମନ୍ତବ୍ୟ ଦେଇଥିଲେ ତାହାର ସାରାଂଶ ନିମ୍ନରେ ଦିଆଗଲା । ସେଇଥିରୁ ଏ ଯୁଦ୍ଧରେ ହାଇଦରଙ୍କର ଶ୍ରେଷ୍ଠତ୍ୱ ପ୍ରତିପାଦିତ ହେବ । ସେମାନେ ଲେଖିଛନ୍ତି, "ଭାରତର ବିଭିନ୍ନ ଶକ୍ତି ଯେଉଁ-ମାନେ କି ଆମ ନାଁ ଶୁଣିଲେ ହୃତ୍‌କମ୍ପ ଅନୁଭବ କରୁଥିଲେ, ସେହି-ମାନଙ୍କ ଆଖି ଆଗରେ ଗୋଟାଏ ଦେଶୀୟ ଶକ୍ତି ମାନ୍ଦ୍ରାଜର ଛାତି ଉପରେ ବସି ସେଣ୍ଟଜର୍ଜ ଦୁର୍ଗର ଗଭର୍ଣ୍ଣରଙ୍କୁ ଚୁକ୍ତିସର୍ତ୍ତସବୁ ଡାକୁଛି । ଏହି ଯୁଦ୍ଧରେ କମ୍ପାନୀର ସମ୍ମାନ ଓ ମର୍ଯ୍ୟାଦା ଏତେ ତଳକୁ ଖସି ପଡ଼ୁଛି ଯେ ତାହା ପୁଣି ଫେରି ପାଇବାକୁ ବହୁ ବର୍ଷ ଲାଗିଯିବ ।"



# ମହାରାଷ୍ଟ୍ର ଶିଙ୍ଘା

ପୂର୍ବରୁ ହାଇଦର ଅଲ୍ଲି ମରହଟ୍ଟାମାନଙ୍କ ମଧ୍ୟରେ ଗୃହ ବିବାଦ ସୃଷ୍ଟି କରିବାକୁ ଚେଷ୍ଟା କରିଥିଲେ । ମାଧବ ରାଓଙ୍କ ବିରୁଦ୍ଧରେ ରଘୁନାଥ ରାଓଙ୍କ ସହିତ ସମ୍ପର୍କ ପ୍ରତିଷ୍ଠା କରିଥିଲେ । ଏଥିଯୋଗୁଁ ପୁନାଠାରେ ନାନାଫର୍ଣ୍ଣବିସ୍ ଭୀଷଣ ଭାବରେ କ୍ରୋଧାନ୍ୱିତ ହୋଇଥିଲେ । ଠିକ୍ ଏତିକବେଳେ ଗୁଟିର ଅଧିପତି ମୁରାରି ରାଓ ଏବଂ ଚିତାଲଦୁର୍ଗର ଅଧିପତି, ହାଇଦର ଅଲ୍ଲିଙ୍କ ବିରୁଦ୍ଧରେ ପଲ୍ଲିଗାରମାନଙ୍କ ସାହାଯ୍ୟରେ ଅଭିଯାନ ଆରମ୍ଭ କଲେ । ଏହା ହେଉଛି ହାଇଦରଙ୍କ ବିରୁଦ୍ଧରେ ମରହଟ୍ଟାମାନଙ୍କର ତୃତୀୟ ଅଭିଯାନ । କିନ୍ତୁ ହାଇଦର ଇଂରେଜମାନଙ୍କ ସହିତ ସାହାଯ୍ୟ ଚୁକ୍ତିରେ ଆବଦ୍ଧ ହୋଇଥିବାରୁ ଦମ୍ଭ ହୋଇ ବସିଲେ । ଏତିକବେଳେ ମିର ରେଜା ମରହଟ୍ଟାମାନଙ୍କ ପକ୍ଷ ତ୍ୟାଗ କରି ହାଇଦର ଅଲ୍ଲିଙ୍କ ପକ୍ଷ ଗ୍ରହଣ କଲେ । ହାଇଦର ଓ ରେଜା, ଉଭୟ ମିଶି ଚିକ୍ବଲପୁରସ୍ଥ ମରହଟ୍ଟା ଫୌଜଦାର ମହ୍ୱମାଜୀସିନ୍ଧିଆଙ୍କୁ ଆକ୍ରମଣ କଲେ । ମହ୍ୱମାଜୀସିନ୍ଧିଆ ଆତ୍ମରକ୍ଷା କରିବା ପାଇଁ ପଳାଇଗଲେ । ଏତିକବେଳେ ହାଇଦର ତାଳପୁର ଅଧିପତି ଲକ୍ଷ୍ମଣଜୀଙ୍କି ସନ୍ଧି କରିବା ପାଇଁ ଡକାଇ ଆଣି ବନ୍ଦୀ କଲେ ଓ

ତାଙ୍କର ଅନେକ ଅନୁଚରଙ୍କୁ ଫାଶୀ ପକାଇଲେ । ତତ୍ପରେ ହାଇଦର ଗୁଟିର ଅଧିପତି ମୁରାରି ରାଓଙ୍କ ସହିତ ସନ୍ଧିସୂତ୍ରରେ ଆବଦ୍ଧ ହେଲେ । ଏତିକିବେଳେ ପେଶୱା ମାଧବ ରାଓ ହାଇଦରଙ୍କ ବିରୁଦ୍ଧରେ ଅଭିଯାନ କଲେ । ଚିକୁରଲୀଠାରେ ଯୁଦ୍ଧ ହେଲା । ହାଇଦର ପରାସ୍ତ ହେଲେ । ହାଇଦର ଅଳି ଚିକୁରଲୀରୁ ଫେରିଲେ । ଫେରିବା ଦିନ ରାତିରେ ହାଇଦରଙ୍କର ଘନ ଘନ ଆଦେଶ ସତ୍ତ୍ୱେ ଟିପୁ ଅନୁପସ୍ଥିତ ଥିଲେ । ଏଥିରେ ହାଇଦର କ୍ରୋଧାନ୍ୱିତ ହୋଇ ଟିପୁଙ୍କୁ ବଡ଼ ନିର୍ଦ୍ଦୟ ଭାବରେ ବେତ୍ରାଘାତ କଲେ । ତହୁଁ ଟିପୁ ପ୍ରତିଜ୍ଞା କଲେ ଯେ ସେ ଜୀବନଯାକ ଆଉ ଅସ୍ତ୍ର ଧାରଣ କରିବେ ନାହିଁ । ଟିପୁ ନିଜ ପ୍ରତିଜ୍ଞା ରକ୍ଷା କରିଥିଲେ । ତତ୍ପରେ ଟିପୁ କେତେକ ପିଣ୍ଡାରୀଙ୍କ ସାହାଯ୍ୟରେ ଯାଇ ହାଇଦର ଅଳିଙ୍କୁ ଶ୍ରୀରଙ୍ଗପତ୍ତନଠାରେ ସାକ୍ଷାତ କଲେ । ଟିପୁଙ୍କୁ ହରାଇଛନ୍ତି ବୋଲି ହାଇଦର ଅତି ଦୁଃଖରେ କାତର ହୋଇ ନିଜ ଦୁର୍ଗର ଦକ୍ଷିଣ-ପୂର୍ବ ପାର୍ଶ୍ୱସ୍ଥ ମସଜିଦ୍‌ରେ ପ୍ରାର୍ଥନା କରୁଥିଲେ । ଟିପୁଙ୍କୁ ପାଇ ହାଇଦରଙ୍କର ଆନନ୍ଦର ସୀମା ରହିଲା ନାହିଁ ।

ପେଶୱାଙ୍କ ପକ୍ଷରୁ ତ୍ରିମ୍ବକ୍ ରାଓ ଶ୍ରୀରଙ୍ଗପତ୍ତନ ଆକ୍ରମଣ କଲେ । ସେ ହାଇଦରଙ୍କର ବହୁତ ଗୁଡ଼ିଏ ରାଜ୍ୟ ଅଧିକାର କରିନେଲେ । କିନ୍ତୁ ଏତିକିବେଳେ ପେଶୱାଙ୍କ ସ୍ୱାସ୍ଥ୍ୟ ଅତ୍ୟଧିକ ଖରାପ ହେବାରୁ ସେ ଯୁଦ୍ଧ ବନ୍ଦ କରିବା ପାଇଁ ଆଦେଶ ଦେଲେ । ତେଣୁ ସନ୍ଧି ହେଲା । ଏହି ସନ୍ଧି ଅନୁସାରେ ମରହଟ୍ଟାମାନେ ସିରା, ହସକୋଟ, ଦୋଦବଲପୁର, କୋଲର ଏବଂ ସେଗୁଡ଼ିକର ସାମନ୍ତ ରାଜ୍ୟସବୁ ପାଇଲେ । ବାଙ୍ଗାଲୋର ପରିବର୍ତ୍ତେ

ମଡ଼ାଗିରି ଲାଭକଲେ । ହାଇଦର ଅଲି ମରହଟ୍ଟାମାନଙ୍କୁ ପଚାଶ ଲକ୍ଷ ଟଙ୍କା ଦେବାକୁ ସ୍ୱୀକୃତ ହେଲେ । ଏହାଛଡ଼ା ଟ୍ରିମ୍ବକ ରାଓ ଏବଂ ଅନ୍ୟାନ୍ୟ ସର୍ଦ୍ଦାରମାନେ ନେବା ପାଇଁ ତାଙ୍କୁ ଆହୁରି ଦଶ ଲକ୍ଷ ଟଙ୍କା ଦରବାର ଦାବୀ ସ୍ୱରୂପ ଦେବାକୁ ପଡ଼ିଲା ।

ଏହି ଯୁଦ୍ଧରେ ହାଇଦର ପୂର୍ବଚୁକ୍ତି ଅନୁସାରେ ମାନ୍ଦ୍ରାଜ୍ ସରକାରଙ୍କର ସାହାଯ୍ୟ ଲୋଡ଼ିଥିଲେ । କିନ୍ତୁ ହାଇଦରଙ୍କର ଏତେବଡ଼ ବିପଦରେ ସେମାନେ ହାଇଦରଙ୍କୁ ଆଡ଼ଆଖିରେ ସୁଦ୍ଧା ଚାହିଁଲେ ନାହିଁ । ଏପରି ବିଶ୍ୱାସଘାତକତା ଦେଖି ହାଇଦରଙ୍କ ହୃଦୟ ଦୁଃଖ ଓ କ୍ରୋଧାନଳରେ ଜଳି ଉଠିଲା ।

ଏଥି ମଧ୍ୟରେ ମରହଟ୍ଟା ପେଶବା ମାଧବ ରାଓ ମରିଗଲେ । ପୁନାଠାରେ ମରହଟ୍ଟାମାନଙ୍କ ମଧ୍ୟରେ ଗୃହବିବାଦ ଆରମ୍ଭ ହୋଇଗଲା । ବାରଭାଇ ଦଳ ଏବଂ ରାଘୋବାଙ୍କ ଦଳ ମଧ୍ୟରେ ଭୟଙ୍କର ବିବାଦ ଉପସ୍ଥିତ ହେଲା । ଏହାର ସୁଯୋଗ ନେଇ ହାଇଦର ସିରା, ମାଡ଼୍‌ଡ଼ାଗିରି, ଚେନାରାୟପୁର, ହସକୋଟ, ଦୋଦ୍‌ବଲପୁର ଓ ବେଲୁର ପୁନର୍ଦ୍ଦଖଲ କଲେ ।

ତତ୍ପରେ ହାଇଦର ଗୁଟି ଅବରୋଧ କଲେ । ଗୁଟିର ଅଧିପତି ମୁରାରି ରାଓ ନାନାଫର୍ଣ୍ଣାବିସଙ୍କ ଚେଷ୍ଟା ସତ୍ତ୍ୱେ ପୁନାରୁ କୌଣସି ସାହାଯ୍ୟ ପାଇ ପାରିଲେ ନାହିଁ । ଏତିକିବେଳେ ଗୁଟି ଦୁର୍ଗରେ ଜଳାଭାବ ଘଟିଲା । ତେଣୁ ମୁରାରି ରାଓ ବାଧ୍ୟହୋଇ ସନ୍ଧି ପ୍ରସ୍ତାବ କଲେ । ହାଇଦର ମଧ୍ୟ ସନ୍ଧି କରିବା ପାଇଁ ପ୍ରସ୍ତୁତ ଥିଲେ । ଏହି ସନ୍ଧି କଥାବାର୍ତ୍ତା ଚାଲିଥାଏ । ହାଇଦର ଅଲି ସେ ପର୍ଯ୍ୟନ୍ତ ଜାଣି ନ ଥାନ୍ତି ଯେ ଗୁଟି ଦୁର୍ଗରେ ଜଳାଭାବ ଘଟିବାରୁ ମୁରାରି ରାଓ ସନ୍ଧି ପ୍ରସ୍ତାବ କରୁଛନ୍ତି ।

ମୁରାର ରାଓ ମୁଦ୍ରା ଆକାରରେ ଏବଂ ମୂଲ୍ୟବାନ ଦ୍ରବ୍ୟ ଆକାରରେ ସାତ ଲକ୍ଷ ଟଙ୍କା ଦେବାପାଇଁ ସ୍ୱୀକାର କଲେ । ବାକି ପାଞ୍ଚଲକ୍ଷ ଟଙ୍କା ପାଇଁ ସେ ପ୍ରତିଭୂ ଦେବାପାଇଁ ସ୍ୱୀକୃତ ହେଲେ । ସର୍ତ୍ତ ଅନୁସାରେ ମିର ରେଜା ମୂଲ୍ୟବାନ ଦ୍ରବ୍ୟାବଳୀ ଓ ଛ'ଜଣ ପ୍ରତିଭୂ ସାଥିରେ ଘେନକରି ଆସିଲେ । ସେମାନଙ୍କ ମଧ୍ୟରୁ ଗୁଟିର ଭୂତପୂର୍ବ ପ୍ରଧାନ ସେନାପତି ମୃତ ୟୁନୁସ ଖାଁଙ୍କର ବାଳକ ପୁତ୍ର ଜଣେ । ହାଇଦର ତା ପ୍ରତି ସ୍ନେହଶ୍ରଦ୍ଧାର ଏପରି ଛଳନା କଲେ ଯେ ସେ ସେଥିରେ ଭୁଲିଯାଇ ପ୍ରକାଶ କଲା କି ଗୁଟି ଦୁର୍ଗରେ ଜଳାଭାବ ଘଟି ନ ଥିଲେ ମୁରାରି ରାଓ ସନ୍ଧି କରି ନ ଥାନ୍ତେ । ହାଇଦର ଏକଥା ଶୁଣିଲା ମାତ୍ରେ ସନ୍ଧି କଥାବାର୍ତ୍ତା ବନ୍ଦ କରିଦେଇ ପୁଣି ଯୁଦ୍ଧ ଆରମ୍ଭ କଲେ । ଫଳରେ ମୁରାରି ରାଓ ବିନା ସର୍ତ୍ତରେ ଆତ୍ମ-ସମର୍ପଣ କଲେ । ମୁରାରି ଏବଂ ଭେଙ୍କଟ ରାଓ ଓ ନରସିଂହ ରାଓ ନାମକ ତାଙ୍କର ଦୁଇଟି ପୁତ୍ର ବନ୍ଦୀ ସ୍ୱରୂପ କାବଲ ଦୁର୍ଗକୁ ନୀତ ହେଲେ । କିଛିଦିନ ପରେ ମୁରାରି ରାଓଙ୍କର ମୃତ୍ୟୁ ଘଟିଲା ।

ମୁରାର ରାଓ ତିନିମାସ ଧରି ହାଇଦରଙ୍କ ସହିତ ଯୁଦ୍ଧ କରିଥିଲେ । କିନ୍ତୁ ପେଶବାଙ୍କର ଜଣେ ଏତେବଡ଼ ବିଶ୍ୱସ୍ତ ରାଜାଙ୍କୁ ଦୀର୍ଘ ତିନିମାସ ମଧ୍ୟରେ କେବଳ ଗୃହବିବାଦ ଯୋଗୁଁ ପୁନାଠାରୁ କୌଣସି ସାହାଯ୍ୟ ମିଳି ପାରିଲା ନାହିଁ । ମୁରାରି ରାଓଙ୍କ ପତନ ଦକ୍ଷିଣାତ୍ୟରେ ମରହଟ୍ଟା ଶକ୍ତି କି ଖର୍ବ କରିଦେଲା । ତତ୍ପରେ ହାଇଦର ଅଳ୍ପି ମରହଟ୍ଟାମାନଙ୍କ ସହିତ ଯୁଦ୍ଧରେ ବ୍ୟାପୃତ ରହି ଅନେକ ରାଜ୍ୟ ଅଧୀନସ୍ଥ କଲେ । ମାଲବାର ଓ ତ୍ରିବାଙ୍କୁଡ଼ରେ ମଧ୍ୟ ହାଇଦର ସ୍ୱୀୟ କ୍ଷମତା ବିସ୍ତାର କରିଥିଲେ ।



# ତୁମେ ତ ହରିଲ ମୃତ୍ୟୁ

ହାଇଦର୍ ଅଲ୍ଲି ଇଂରେଜମାନଙ୍କର ବିଶ୍ୱାସଘାତକତାର ପ୍ରତିଶୋଧ ନେବପାଇଁ ଚୂନ୍ଧି ବସିଥିଲେ । ଏତିକିବେଳେ ପେଶବା, ନିଜାମ ଓ ହାଇଦର ଅଲ୍ଲି ପୁଣି ଚୁକ୍ତି ସୂତ୍ରରେ ଆବଦ୍ଧ ହେଲେ । ତା୨୮-୫-୧୭୮୦ ରେ ବ୍ରାହ୍ମଣ ପଣ୍ଡିତ ବସେଇ ଶୁଭବେଳା ଦେଖି ହାଇଦର୍ ଅଲ୍ଲି ଯୁଦ୍ଧ ଅଭିଯାନରେ ବାହାରିପଡ଼ିଲେ । ସେ ପଞ୍ଚାବନ ହଜାର ପଦାତିକ, ଅଠେଇଶ ହଜାର ଅଶ୍ୱାରୋହୀ ଏବଂ ଅନ୍ୟାନ୍ୟ ପ୍ରହରୀ ସେନାଙ୍କ ସହିତ ପ୍ରାୟ ନବେ ହଜାର ସୈନ୍ୟସମ୍ବଳିତ ବାହିନୀ ପ୍ରସ୍ତୁତ କରିଥିଲେ । ତାଙ୍କର ଦୁଇ ପୁତ୍ର ଟିପୁ ଓ କରିମ୍ ସାହେବ ତାଙ୍କ ସହିତ ରହିଥିଲେ । ଇଂରେଜ ସେନାପତି ବେଲିଙ୍କି ହାଇଦର ଭୀଷଣ ଭାବରେ ଆକ୍ରମଣ କଲେ । ପାଲୁରଠାରେ ଇଂରେଜମାନେ ସମ୍ପୂର୍ଣ୍ଣରୂପେ ପରାସ୍ତ ହେଲେ । ଏହି ବିଜୟରେ ହାଇଦର ଅଲ୍ଲିଙ୍କ ଦକ୍ଷତା ସ୍ପଷ୍ଟ ପ୍ରମାଣିତ ହୋଇଥିଲା । ହାଇଦରଙ୍କର ଗୁପ୍ତଚର ବିଭାଗ ଏ ବିଜୟ ପାଇଁ ଯଥେଷ୍ଟ ସାହାଯ୍ୟ କରିଥିଲେ । ହାଇଦରଙ୍କ ଗୁପ୍ତଚର ବିଭାଗର ଦକ୍ଷତା ଇଂରେଜମାନେ

ନିଜେ ସ୍ୱୀକାର କରିଛନ୍ତି । ହାଇଦରଙ୍କଠାରୁ ଇଂରେଜଙ୍କର ଏହି ପରାଜୟକୁ ଲକ୍ଷ୍ୟ କରି ଜଣେ ଫରାସୀ ଅଫିସର ଲେଖିଛନ୍ତି, "ଏପରି ପରାଜୟ ଭାରତ ଇତିହାସରେ ଆଉ କେବେ ଘଟିନାହିଁ ।" ଏହି ପରାଜୟର ମାସକ ପରେ ଫିଲପ୍ ଫ୍ରାନସିସ୍ ଗୋଟିଏ ଚିଠିରେ ଗଡ଼ଫ୍ରେଙ୍କ ନିକଟକୁ ଲେଖିଥିଲେ, "ମାଦ୍ରାଜକୁ ରକ୍ଷା କରିବାପାଇଁ ଏବଂ କର୍ଣ୍ଣାଟକକୁ ଉଦ୍ଧାର କରିବାପାଇଁ ସାର୍ ଆୟାର୍ କୁଟ୍ ଯାଉଛନ୍ତି । ଯଦି ସେ କୃତକାର୍ଯ୍ୟ ହେଉଛନ୍ତି ତେବେ ସେ ନିଶ୍ଚୟ ଈଶ୍ୱରଙ୍କର ଗେହ୍ଲାପୁଅ ।"

ଏହାପରେ ପୋର୍ଟୋନୋଭୋଠାରେ ଉଭୟ ପକ୍ଷ ମଧ୍ୟରେ ଯୁଦ୍ଧ ହୋଇଥିଲା । ସେଥିରେ ହାଇଦର କୁଟ୍‌ଙ୍କ ଦ୍ୱାରା ପରାସ୍ତ ହୋଇଥିଲେ । କିନ୍ତୁ ଏଥିରେ କୁଟଙ୍କର କିଛି ବାହାଦୁରୀ ନ ଥିଲା କିମ୍ବା ହାଇଦରଙ୍କ ଶକ୍ତି ଖର୍ବ ହୋଇ ନ ଥିଲା । ତଥାପି ଇଂରେଜମାନେ ପାଲୁର୍‌ଠାରେ ହରାଇଥିବା ସମ୍ମାନର କେତେକାଂଶ ଏହି ବିଜୟରେ ଫେରି ପାଇଥିଲେ ।

ଏହାପରେ ସୋଲିଙ୍ଗରଠାରେ ଉଭୟ ପକ୍ଷ ମଧ୍ୟରେ ଯୁଦ୍ଧ ଲାଗିଥିଲା । ଏହି ଯୁଦ୍ଧରେ ଟିପୁ ବିଶେଷ ଭାଗ ନେଇଥିଲେ । କିନ୍ତୁ ଏହି ଯୁଦ୍ଧରେ ହାଇଦର ଅଲ୍ଲି ପରାସ୍ତ ହୋଇଥିଲେ । ହାଇଦର ଅଲ୍ଲି ମରହଟ୍ଟା ଓ ନିଜାମଙ୍କଠାରୁ କୌଣସି ସାହାଯ୍ୟ ପାଇଲେ ନାହିଁ । ତେଣୁ ହାଇଦର କହିଥିଲେ, "ଜଣେ ସାଧାରଣ ବୁଦ୍ଧିସଂପନ୍ନ ଲୋକ ମରହଟ୍ଟାମାନଙ୍କୁ କଦାପି ବିଶ୍ୱାସ କରିବ ନାହିଁ ଏବଂ ମରହଟ୍ଟାମାନେ ସେପରି ବିଶ୍ୱସ୍ତରୂପେ ଗୃହୀତ ହେବାପାଇଁ କେବେହେଲେ ଆଶା କରି ନ ଥା'ନ୍ତି ।"

ତତ୍ପରେ ହାଇଦର ଏକାକୀ ଯୁଦ୍ଧ ଚଳାଇଥିଲେ । ଟିପୁ ଓ କରିମ ସାହେବ ମଧ୍ୟ ଯୁଦ୍ଧରେ ମାତିଥା'ନ୍ତି । ହିଭୁଟରଠାରେ ହାଇଦର ଓ ଟିପୁ ବୀରତ୍ୱର ସହିତ ଲଢ଼ି କୁଟ୍‌ଙ୍କୁ ପାଞ୍ଚ ମିନଟ ମଧ୍ୟରେ ପରାସ୍ତ କଲେ । ଏତିକବେଳେ ତା ୮-୧୨-୧୭୮୨ ରେ ନିଜ ଶିବିର ମଧ୍ୟରେ ହାଇଦର ଚିରଦିନ ଲାଗି ନୟନ ମୁଦ୍ରିତ କଲେ । ପିତାଙ୍କର ମୃତ୍ୟୁ ସମ୍ବା'ଦ ପାଇ ଟିପୁ ପିତାଙ୍କ ଶିବିରକୁ ଧାଇଁଗଲେ । ଟିପୁ ପହଞ୍ଚିବା ପର୍ଯ୍ୟନ୍ତ ହାଇଦରଙ୍କ ଶିବିରରେ ଏହି ମୃତ୍ୟୁ ଘଟଣା ଗୋପନ ରଖାଯାଇଥିଲା । ଦେଶ ଓ ଜାତିର ସମ୍ମାନ ରକ୍ଷା କରିବାପାଇଁ ବୀର ହାଇଦର ମୃତ୍ୟୁ ବରଣ କରିଥିଲେ, ଆପଣାର ଯୁଦ୍ଧ ଶିବିର ମଧ୍ୟରେ ।

ଧନ୍ୟ ହାଇଦର—

ଜାତିଲାଗି ଚିର ମୁଦ୍ରିତ ତବ ନୟନ,
ଦେଶଲାଗି ରଣ-ଜହର-ଶେଯା-ଶୟନ ।



# କର୍ମମୟ ଜୀବନ

ହାଇଦର ଅଲ୍ଲି ପ୍ରତିଦିନ ସକାଳ ଛ' ଘଣ୍ଟା ବେଳେ ଶଯ୍ୟା ତ୍ୟାଗ କରନ୍ତି ଏବଂ ପ୍ରାୟ ନିଶାର୍ଦ୍ଧରେ ନିଦ୍ରା ଯା'ନ୍ତି । ସେ ବିଛଣାରୁ ଉଠିଲା ମାତ୍ରେ ପୂର୍ବଦିନ ନିଯୁକ୍ତ ଥିବା ତାଙ୍କର ସେନାପତିମାନେ ତାଙ୍କୁ ସାକ୍ଷାତ କରି ପୂର୍ବଦିନର ବିବରଣୀ ଦିଅନ୍ତି ଏବଂ ପୁଣି ନୂତନ ଆଦେଶ ଘେନି ମନ୍ତ୍ରୀମାନଙ୍କୁ ଜଣେଇ ଦିଅନ୍ତି । ଜରୁରୀ ଘଟଣା ନେଇ ମନ୍ତ୍ରୀମାନେ ତାଙ୍କୁ ଯେ କୌଣସି ସମୟରେ ସାକ୍ଷାତ କରିପାରୁଥିଲେ । ଦିନ ରାତି, ଯେ କୌଣସି ସମୟରେ ସମ୍ବାଦଦାତାମାନେ ତାଙ୍କୁ ସମ୍ବାଦ ଦେଇ ଯାଉଥିଲେ । ଦିନ ଆଠଟା ବା ନ'ଟା ସମୟରେ ସେ ନିଜ ଆବାସ ଗୃହ ସଭାଗୃହକୁ ଯାଉଥିଲେ । ସେଠାରେ ତାଙ୍କ ସେକ୍ରେଟେରୀମାନେ ଅପେକ୍ଷା କରି ରହିଥା'ନ୍ତି । ସେମାନଙ୍କ ହାତରେ ସେ ଚିଠିଗୁଡ଼ିକ ନେଇ କ'ଣ କ'ଣ ଲେଖିବାକୁ ହେବ ସେ କଥା ବୁଝାଇ ଦିଅନ୍ତି । ଏହି ସମସ୍ତ ମଧ୍ୟରେ ତାଙ୍କର ପୁତ୍ର, ବନ୍ଧୁ ବା ସାଙ୍ଗମାନେ ତାଙ୍କ ସହିତ ସାକ୍ଷାତ କରନ୍ତି ଏବଂ ଯଦି ନ' ଟା ସମୟ ହୋଇଯାଇଥାଏ ତେବେ ସେହିଠାରେ ଭୋଜନ କରନ୍ତି । ତତ୍ପରେ ଅବସର ଥିଲେ ହାଇଦର ହାତୀମାନଙ୍କ ଠାରୁ

ଅଭିବାଦନ ଗ୍ରହଣ କରନ୍ତି । ଦିନ ୧୦ଟା ସମୟକୁ ହାଇଦରଙ୍କ ଭୋଜନ ସରିଯାଇଥାଏ । ଏତିକିବେଳେ ହାଇଦର ସଭାଗୃହକୁ ବିଜେ କରନ୍ତି । ତାଙ୍କ ନିକଟରେ ୩୦।୪୦ ଜଣ ସେକ୍ରେଟେରୀ ବସି ଲେଖାଲେଖି କରନ୍ତି । ପ୍ରତି ମୁହୂର୍ତ୍ତରେ ସମ୍ବାଦବାହୀଗଣ ଘନ ଘନ ଆସି ସମ୍ବାଦ ଜଣେଇ ଦେଇ ଯାଉଥା'ନ୍ତି । ହାଇଦର ଲେଖିପଢ଼ି ଜାଣି ନ ଥିଲେ । ତେଣୁ ସେକ୍ରେଟେରୀମାନେ ପତ୍ର ପଢ଼ି ହାଇଦରଙ୍କୁ ଶୁଣାଇ ଦିଅନ୍ତି । ସେହି ପତ୍ରଟି ହାଇଦର ଅନ୍ୟଦ୍ୱାରା ଆଉ ଥରେ ପଢ଼ାଇ ଶୁଣିନିଅନ୍ତି । ଏହି ପତ୍ରଗୁଡ଼ିକରେ ମନ୍ତ୍ରୀମାନେ ମୁଦ୍ରାଦ୍ୱାରା ଦସ୍ତଖତ କରନ୍ତି । ତପରେ ହାଇଦର ସ୍ୱହସ୍ତରେ ଦସ୍ତଖତ କରନ୍ତି । ଏସବୁ ସରିଲେ ପତ୍ରଗୁଡ଼ିକ ପ୍ରେରିତ ହୁଏ ।

ଦିନ ତିନିଘଣ୍ଟା ସମୟରେ ହାଇଦର ବିଶ୍ରାମ କରନ୍ତି । ପ୍ରାୟ ୫ଟା ସମୟରେ ଉଠି ନିଜର ପଦାତିକ ଓ ଅଶ୍ୱାରୋହୀ-ମାନଙ୍କର ଅସ୍ତ୍ରକ୍ରୀଡ଼ା ଉପଭୋଗ କରନ୍ତି । ରାତିରେ ନୃତ୍ୟଗୀତ ଓ ଆମୋଦ ପ୍ରମୋଦର ବ୍ୟବସ୍ଥା ଥିଲା । ହାଇଦରଙ୍କର ଏଥିପ୍ରତି ସେତେ ଆଦର ନ ଥାଏ । ସେତେବେଳେ ସେ ବଡ଼ ବଡ଼ ଅଫିସରମାନଙ୍କ ସହିତ ଗୋପନୀୟ ବିଷୟମାନ ଆଲୋଚନା କରନ୍ତି ।

ହାଇଦର ଅଳ୍ପି ଟିକିଏ ଇନ୍ଦ୍ରିୟପରାୟଣ ଥିଲେ । କଥୋପ-କଥନ ସମୟରେ ସେ ବଡ଼ ଅଭଦ୍ର ଭାଷା ବ୍ୟବହାର କରୁଥିଲେ । କାର୍ଯ୍ୟରେ ଅବହେଳା କରୁଥିବା କର୍ମଚାରୀମାନଙ୍କୁ ସେ ଘୋଡ଼ା ଚାବୁକ୍ ଅଥବା ବେତଦ୍ୱାରା ପ୍ରହାର କରୁଥିଲେ । ଏପରିକି, ସେ ନିଜର ବଡ଼ପୁଅ ଏବଂ ଉତ୍ତରାଧିକାରୀ ଟିପୁଙ୍କୁ ମଧ୍ୟ ସାହାବାଳକ

ଅବସ୍ଥାରେ ବେହାଘାତ କରିଥିଲେ । ତାଙ୍କ ଦରବାର ବିଳାସ-ପୂର୍ଣ୍ଣ ନ ଥିଲା । ସେଠାରେ ତୋଷାମଦର ସ୍ଥାନ ନ ଥିଲା । କାର୍ଯ୍ୟ-ଦକ୍ଷତା ତାଙ୍କର ଏକମାତ୍ର ମାପକାଠି ଥିଲା ।

ଇଂରେଜମାନେ ହାଇଦରଙ୍କୁ ସେମାନଙ୍କର ବିରାଟ ଶତ୍ରୁ ବୋଲି ମନେ କରୁଥିଲେ । ହାଇଦର ଅଲ୍ଲିଙ୍କ ନାଁ ଇଂଲଣ୍ଡର ସ୍କୁଲ ପିଲାମାନେ ମଧ୍ୟ ଜାଣିଥିଲେ । ଭାରତରେ ଇଷ୍ଟ ଇଣ୍ଡିଆ କମ୍ପାନୀ ଅଧୀନରେ ଚାକିରି କାର୍ଯ୍ୟ କରିବା ପାଇଁ ଲଣ୍ଡନସ୍ଥ ଭାରତଭବନ (India House)ରେ ଥରେ ପିଲା ବଛା ହେଉଥିଲେ । ଜନ୍ ମାଲ୍‌କମ୍ ବୋଲି ଗୋଟିଏ ପିଲାକୁ ଜଣେ ଡିରେକ୍ଟର ପଚାରିଲେ, "ଆଚ୍ଛା, ହାଇଦର ଅଲ୍ଲିଙ୍କ ସହିତ ସାକ୍ଷାତ ହେଲେ ତୁମେ କ'ଣ କରିବ ?" ପିଲାଟି ଉତ୍ତର ଦେଲା, "ପଚାରୁଛନ୍ତି ମୁଁ କ'ଣ କରିବି ? ମୁଁ ମୋ ଖଣ୍ଡା ବାହାର କରି ହାଇଦର ଅଲ୍ଲିଙ୍କ ମୁଣ୍ଡକୁ ହାଣି ପକାଇବି ।" ପୂର୍ବ ପରୀକ୍ଷାମାନଙ୍କରେ ପିଲାଟି ଫେଲ ହୋଇଯାଇଥିଲା । କିନ୍ତୁ ଏହି ଉତ୍ତରରେ ସନ୍ତୁଷ୍ଟ ହୋଇ ଡାଇରେକ୍ଟର ଜଣକ କହିଲେ, ଦିଅ ତାକୁ ପାସ୍ କରାଇ ଦିଅ ।" ତାହାହିଁ ହେଲା । ଇଂରେଜମାନେ ହାଇଦରଙ୍କୁ ଯେପରି ଶତ୍ରୁ ବୋଲି ମନେ କରୁଥିଲେ ହାଇଦର୍ ମଧ୍ୟ ସେମାନଙ୍କୁ ସେହିପରି ଘୃଣା କରୁଥିଲେ ।



# ଶାସନ ଧାରା

ହାଇଦର୍ ଅଲ୍ଲି ଏକଚ୍ଛତ୍ରାଧିପତି—ଏକଚ୍ଛତ୍ର ଶାସକ । କିନ୍ତୁ ଶାସନ କ୍ଷେତ୍ରରେ ସେ ଦେଶର ବିଭିନ୍ନ ଅଞ୍ଚଳରେ ପ୍ରତିଷ୍ଠିତ ବିଭିନ୍ନ ରୀତି ନୀତି ଓ ପରମ୍ପରା ପ୍ରତି ସମ୍ମାନ ପ୍ରଦର୍ଶନ କରୁଥିଲେ ।

କେନ୍ଦ୍ର ଶାସନ ୧୮ଟି ବିଭାଗରେ ବିଭକ୍ତ ହୋଇଥିଲା, ଯଥା:--(୧) ଅଥଭନାମ--ରାଜସ୍ୱ ବିଭାଗ (୨) କନ୍ଦାଚରମ--ପଦାତିକ ସେନା ବିଭାଗ (୩) ଚଗଲି କନ୍ଦାଚରମ୍—ଅଶ୍ୱାରୋହୀ ବିଭାଗ (୪) ସୁକମ—ଆମଦାନୀ ଓ ରପ୍ତାନୀ ଶୁଳ୍କ ବିଭାଗ (୫) ଦେବସ୍ଥାନମ୍—ମଠ ମନ୍ଦିରାଦି ବିଭାଗ (୬) ପୋମୁ—ବସ୍ତ୍ରଶୁଳ୍କ ବିଭାଗ (୭) ମହୀଶୂର ହାବେଲୀ ବିବୃରଣା ଭେଦୀ—ବିଭିନ୍ନ ବିଭାଗ ମଧ୍ୟରେ ଯନ ସ୍ୱନମପ୍ରକାଶ୍ର ବିଭାଗ । ଏହାଛଡ଼ା ତଦନୁରୂପ ଆହୁରି ଗୁଟେଗଟି ବିଭାଗ ଥିଲା (୧୨) ପନ୍ନ ଚେବଧୀ—କେନ୍ଦ୍ର ବିଚାରାଳୟ (୧୩) ଦୋବ ଉଗ୍ରଙ୍କ—ବିଦେଶରୁ ଶସ୍ୟ ଆମଦାନୀ ବିଭାଗ (୧୪) ଖାବେଣଂ ଚେବଧୀ—ଯୁଦ୍ଧ ସରଞ୍ଜାମ ଭଣ୍ଡାର ବିଭାଗ (୧୫) ଉରୁଦ୍ୱବାଳୀ ଚେବଧୀ—ବୈଦେଶିକ ବିଭାଗ (୧୬) ଶିଳାଭନ୍ତରି—ରାଜାଙ୍କ ଦେହରକ୍ଷା ବିଭାଗ (୧୭) ଅର୍ଜ୍ଜୁବେଗୀ—ସରକାରୀ କର୍ମଚାରୀ ଆଚରଣ ବିଭାଗ (୧୮) ଅଷ୍ଟଗ୍ରାମଞ୍ଚେବଧୀ—କୃଷି ବିଭାଗ ।

ଖାନ୍ଦେରାଓ ହାଇଦରଙ୍କର ପ୍ରଥମ ଦେଓ୍ୱାନ ଥିଲେ । ଖାନ୍ଦେରାଓଙ୍କ ପରେ ଆଉ କେତୋଟି ଦେଓ୍ୱାନ ନିଯୁକ୍ତ ହୋଇ ଛଡ଼ା ଖାଇଥିଲେ । ଶେଷରେ ମିର ସାଦକ୍ ଦେଓ୍ୱାନ ପଦରେ ନିଯୁକ୍ତ ହୋଇ ଶେଷ ପର୍ଯ୍ୟନ୍ତ ରହିଥିଲେ ।

ହାଇଦରଙ୍କର ଗୋଟିଏ ସୁଶିକ୍ଷିତ ଗୋଇନ୍ଦା ବିଭାଗ ଥିଲା । ସମିଆ ନାମଧେୟ ଜଣେ ବ୍ରାହ୍ମଣ ଏହି ବିଭାଗର ସର୍ବୋଚ୍ଚ ଅଫିସର୍ ଥିଲେ । କିନ୍ତୁ ହାଇଦରଙ୍କ ମୃତ୍ୟୁ ପରେ ଟିପୁଙ୍କ ବିରୁଦ୍ଧରେ ସେ ଚକ୍ରାନ୍ତ କରିବାରୁ ତାଙ୍କର ପତନ ହୋଇଥିଲା ।

ହାଇଦର ଧର୍ମାନ୍ଧ ନ ଥିଲେ । ସେ ନିଜ ପ୍ରଚଳିତ ମୁଦ୍ରାରେ ହିନ୍ଦୁ ଦେବପ୍ରତିମାର ଛବିକୁ ସ୍ଥାନ ଦେଇଥିଲେ । ବ୍ରାହ୍ମଣ ମତରେ ନିର୍ଦ୍ଦିଷ୍ଟ ଶୁଭଦିନ ଦେଖି ସେ ଯୁଦ୍ଧାଭିଯାନରେ ବାହାରୁଥିଲେ । ହାଇଦର ରଙ୍ଗନାଥଙ୍କ ଦେବ୍ଧମନ୍ଦିରକୁ ମାସକ ମଧ୍ୟରେ ପୁନର୍ନିର୍ମାଣ କରାଇଥିଲେ । ସେ ଇନାମ ସୂତ୍ରରେ ବ୍ରାହ୍ମଣମାନଙ୍କୁ ବହୁତ ଜାଗିରୀ ଦେଇଥିଲେ । ଥରେ ପିଅରଜାଦା ନାମକ ଜଣେ ମୁସଲମାନ ହାଇଦରଙ୍କୁ ଆସି କହିଲେ, "ଗୋଟିଏ ହିନ୍ଦୁ ଶୋଭାଯାତ୍ରା ଉପରେ ମୋ ଲୋକମାନେ ଆକ୍ରମଣ କରିବାରୁ କେତେକ ହିନ୍ଦୁ ମୋ ଅନୁଚରମାନଙ୍କୁ ପ୍ରହାର କରିଛନ୍ତି । ତେଣୁ ମୁଁ ଦାବି କରୁଛି ଯେ ଆପଣ ମୁସଲମାନ୍ ସରକାରଙ୍କ ଶ୍ରେଷ୍ଠ ଅଧିପତି ହିସାବରେ ଏଥିରେ ହସ୍ତକ୍ଷେପ କରନ୍ତୁ ।" ତହିଁ ହାଇଦର ଉତ୍ତରରେ କହିଲେ, "ଏ ଗୋଟିଏ ମୁସଲମାନ ସରକାର ବୋଲି ତମକୁ କହିଲା କିଏ ?" ଏଇଥିରୁ ହାଇଦର ଅଲ୍ଲିଙ୍କ ଧର୍ମମତ ସ୍ପଷ୍ଟ ଅନୁମିତ ହୁଏ ।

ହାଇଦରଙ୍କର ବହୁତ ହିନ୍ଦୁ କର୍ମଚାରୀ ଥିଲେ । ତାଙ୍କ ମନ୍ତ୍ରୀମାନଙ୍କ ମଧ୍ୟରୁ ଅଧିକାଂଶ ବ୍ରାହ୍ମଣ ।

ସେନା ବିଭାଗ—୧୭୮୦ ଖ୍ରୀ: ଅ: ବେଳକୁ ହାଇଦରଙ୍କର ପନ୍ଦର ହଜାର ପଦାତିକ, ଚଉଦ ହଜାର ଅଶ୍ୱାରୋହୀ, ବାର ହଜାର ପ୍ରହରୀସୈନ୍ୟ ଏବଂ ଦୁଇ ହଜାର ଆଗ୍ନେୟାସ୍ତ୍ର ଚାଳକ ଥିଲେ । ଏମାନଙ୍କ ମଧ୍ୟରେ ଦେଢ଼ହଜାର ଇଉରୋପୀୟ ଅଫିସର ମଧ୍ୟ ରହିଥିଲେ । ଏହାଛଡ଼ା ଆହୁରି ଅନେକ ସୈନ୍ୟ ଜମିଦାର-ମାନଙ୍କ ଦ୍ୱାରା ସୁରକ୍ଷିତ ହୋଇଥିଲେ । ହାଇଦର ଅଧିକ ସୈନ୍ୟ ସଂଗ୍ରହ କରିବାପାଇଁ ସାଧାରଣ ଉପାୟ ଛଡ଼ା ଆହୁରି ଯୋଡ଼ିଏ ଉପାୟ ଅବଲମ୍ବନ କରିଥିଲେ । ଏଥିମଧ୍ୟରୁ ଗୋଟିଏ ହେଉଛି ଚେଲସେନା । ଯୁଦ୍ଧ ସମୟରେ ହାଇଦର ଶ୍ରେଷ୍ଠ ପିଲାମାନଙ୍କୁ ବନ୍ଦୀକରି ଆଣୁଥିଲେ । ଏମାନେ ସମସ୍ତେ ପ୍ରାୟ ହିନ୍ଦୁ । ଚିତଲଦୁର୍ଗ ଯୁଦ୍ଧ ସମୟରେ ହାଇଦର ପ୍ରାୟ ଦୁଇହଜାର ପିଲାଙ୍କୁ ଧରିଆଣିଥିଲେ । ଏହି ଚେଲସେନାମାନେ ବାଲ୍ୟକାଳରୁ ସରକାରଙ୍କ ଅଧୀନରେ ଯୁଦ୍ଧବିଦ୍ୟା ଶିକ୍ଷା କରନ୍ତି । ଏହାଛଡ଼ା ହାଇଦର ଆଉ ଦଳେ 'ଚଣ୍ଡାଚର ସୈନ୍ୟ' ସୃଷ୍ଟି କରିଥିଲେ । ଏମାନେ ଶାନ୍ତି ସମୟରେ କୃଷିକାର୍ଯ୍ୟ କରନ୍ତି ଏବଂ ଯୁଦ୍ଧ ସମୟରେ ଯୁଦ୍ଧ କରନ୍ତି । ଶାନ୍ତି ସମୟରେ ଏମାନେ ମାସିକ ୨।୩ ଟଙ୍କା ଦରମା ପା'ନ୍ତି । କିନ୍ତୁ ଯୁଦ୍ଧ ସମୟରେ ଗୋଟିଏ ଲେଖାଁ ପାଗୋଡ଼ା ଅଧିକା ପା'ନ୍ତି । ଯୁଦ୍ଧପରେ ସେମାନଙ୍କୁ କ୍ଷତିପୂରଣ ବା ଖିଲତ୍ ଦିଆଯାଏ ।

ହାଇଦରଙ୍କ ସୈନ୍ୟମାନେ ବଡ଼ ଦକ୍ଷ ଥିଲେ । ସେମାନେ ଅବିଶ୍ରାନ୍ତଭାବେ ଏବଂ ବିନା ଦ୍ୱିଧାରେ ଯୁଦ୍ଧ ପରେ ଯୁଦ୍ଧ କରିପାରିବାରେ

ସୁନ୍ଦରରୂପେ ଅଭ୍ୟସ୍ତ ଥିଲେ । ହାଇଦରଙ୍କ ଘୋଡ଼ାମାନେ ବଡ଼ ଆଶ୍ଚର୍ଯ୍ୟଜନକ ଭାବରେ ତାଲିମ ହୋଇଥିଲେ । ପ୍ରଥମ ମହୀଶୂର ଯୁଦ୍ଧ ସମୟରେ ଜଣେ ଇଂରେଜ୍ ସୈନିକ ଲେଖିଛନ୍ତି, "ଏପରି ନିଘଞ୍ଚ ଜଙ୍ଗଲରେ ପଶି ପଦାତିକମାନଙ୍କୁ ଭୀଷଣ ଭାବରେ ଆକ୍ରମଣ କରିବା ଯେ ପୃଥିବୀରେ କୌଣସି ଅଶ୍ୱପକ୍ଷରେ ସମ୍ଭବ, ଏହା ମୁଁ ଆଦୌ ବିଶ୍ୱାସ କରୁ ନ ଥିଲି । କିନ୍ତୁ ଏହିଥର ସ୍ୱଚକ୍ଷୁରେ ଦେଖିଲି ।" କେବଳ ସେତିକି ନୁହେଁ, ସେମାନେ ଭୁଙ୍ଗ ଓ ବନ୍ଧୁର ପାହାଡ଼ ପଥରେ ମଧ୍ୟ ଧସେଇ ପଶିଯିବାପାଇଁ ସମର୍ଥ ହେଉଥିଲେ ।

